# ବନଗହନର ତଳେ

କାହ୍ନୁଚରଣ

ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦବିହାରୀ, କଟକ-୨

ବନଗହନର ତଳେ । ଲେଖକ : କାହ୍ନୁଚରଣ ମହାନ୍ତି । ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ-୭୫୩୦୦୨ । ପଞ୍ଚମ ମୁଦ୍ରଣ : ୧୯୮୩ । ପ୍ରଚ୍ଛଦପଟ : **ଅସିତ ମୁଖାର୍ଜୀ** । ମୁଦ୍ରାକର : ଅନ୍ନଦା ପ୍ରିଣ୍ଟର୍ସ ଅଣ୍ଡ ପବ୍ଲିଶର୍ସ, ଭାଷାକୋଷ ଲେନ୍, କଟକ-୨ ।

BANAGAHAN ARATALE. Author : **Kanhu Charan Mohanty**. Publisher : **Sahadev Pradhan**, Friends Publishers, Binodbehari, Cuttack-753002, Orissa ( India ). Fifth Edition :1983. Cover design : **Asit Mukharjee**. Printer : **Annada Printers & Publishers**, Bhasakosh lane, Cuttack-2. Price : **Rs. 5·00**

ଅଶ୍ୱିନୀ କୁମାର,

୧୯୬୩ ସାଲରେ ଯେତେବେଳେ ଆପଣ ପିଆରମୋହନ ଏକାଡେମୀର ଶିକ୍ଷକ ଥିଲେ, ଆଉ ମୁଁ ଥିଲି ଆପଣଙ୍କର ଛାତ୍ର, ସେତିକି ବେଳେ ମାତୃଭାଷା ପାଇଁ ଆପଣଙ୍କର ତ୍ୟାଗ, ପୁଣି ବ୍ୟାକୁଳତା ଦେଖିଥିଲି । ଦେଶର ସାହିତ୍ୟ ପାଇଁ ଆପଣ ସବୁ ଦୁଃଖ ଅଙ୍ଗେ ଲଗାଇଲେ, ସାହିତ୍ୟ ଗଢ଼ିଲେ । ଅକିଞ୍ଚନ ହେଲେ ମଧ୍ୟ ଛାତ୍ରଟିଏ ମୁଁ । ସେହି ଅଧିକାର ଓ ସାହସରେ ଆପଣଙ୍କ ହାତରେ ମୋର ଏହି ଉଦ୍ୟମଟି ଟେକିଦେଲି ।

କାହ୍ନୁଚରଣ

ଛତ୍ରପୁର ( ଗଞ୍ଜାମ )
ତା ୭ । ୪ । ୧୯୪୭

ପାହାଡ଼ ଓ ଜଙ୍ଗଲ ଭିତରେ ଗୋଟିଏ ଖୋଲା ଜାଗା ।

ସଞ୍ଜ ଆଗରୁ । ଚଇତ ମାସ । କନ୍ଧ ଗାଇଜର ଚଇତ ପର୍ବ ।

ଗୋଟିଏ ପାଖରୁ କେତେଗୁଡ଼ିଏ କନ୍ଧ ଝିଅ ଓ ଆର ପାଖରୁ କେତେଗୁଡ଼ିଏ କନ୍ଧ ପୁଅ ଗୀତ ବୋଲି ବୋଲି ଆସିଲେ । ଚଇତ ପରବ ଗୀତ । ଝିଅଗୁଡ଼ିକ ବେକରେ କାଠମାଳି ପକାଇଛନ୍ତି । ମୁଣ୍ଡରେ ନାନାଜାତି ଫୁଲ ଖୋସିଛନ୍ତି । ରଙ୍ଗିନ୍ ଦେଶୀ ଲୁଗା ପିନ୍ଧିଛନ୍ତି । ପୁଅମାନେ ଧରିଛନ୍ତି ଶିଙ୍ଗୁ, ଡୁଙ୍ଗୁଡୁଙ୍ଗା, ବଂଶୀ । ମୁଣ୍ଡରେ ଓ ଦେହରେ ପର । ନାନା ରଙ୍ଗର ଲୁଗା । ଝିଅ ଓ ପୁଅ ସମସ୍ତେ ଗୋଡ଼ରେ ବାନ୍ଧିଛନ୍ତି ଘୁଙ୍ଗୁର ମାଳ ।

ନାଚିଲେ ।

ଝିଅମାନେ କେତେବେଳେ କାନ୍ଧ ଧରାଧରି ହୋଇ, କେତେବେଳେ ବା ହାତ ଧରାଧରି ହୋଇ ପୁଅମାନଙ୍କ ଆଗରେ, ଚାରିପାଖେ, ନଇଁ ନଇଁ ଗୀତ ବୋଲି ବୋଲି ନାଚିଲେ । ପୁଅମାନେ ଗୀତର ପାଳି ଧରି, ବାଜା ବଜାଇ ଅଙ୍ଗଭଙ୍ଗୀ କରି ନାଚିଲେ ।

ଗୀତ ନାଚ ସରିଲା । ଟିକିଏ ଦମ ନେଲେ । ତାପରେ ଦୁଇ ଦୁଇଜଣ । ଜଣେ ପୁଅକୁ ଧରି ଆଉ ଜଣେ ଝିଅ ନାଚିବାକୁ, ଝିଅ ପୁଅ ସମସ୍ତେ ମିଶିଗଲେ । ସମସ୍ତେ ଦୁଇ ଦୁଇ ଜଣ ହୋଇଗଲେ; କିନ୍ତୁ, ପୁଣି ଗାଁର ଜାନି କାଡ୍ରାକା ଭେଡ଼ିକାର ଝିଅ ସୁନାର ଦୁଇ ହାତ ଦୁଇ ଆଡ଼ୁ ଧରି ଠିଆହୋଇ ରହିଲେ— କନାମ ଗାଁର ନାଇକ ମିଲିକା ନୋକାର ପୁଅ ମାଗତା ଓ ସିପି ଗାଁର ମୁତ କନ୍ଧ ମେସାକା ଡେଙ୍ଗୁର ପୁଅ ବାସ୍ନା । ମାଗତାର ଗୋଟିଏ ହାତ ଧରି ଠିଆହେଲା ପୁଗି ଗାଁର ମଲି କନ୍ଧ ଉର୍ଲିକା ବାସୁର ଝିଅ ଲତା ।

ଯୁଆଳ ନାଚ ବନ୍ଦ ରହିଲା । ସମସ୍ତେ ସୁନା, ମାଗତା, ବାଘ୍ୱା ଓ ଲତାଙ୍କ ଆଡ଼କୁ ଚାହିଁଲେ । ହସିଲେ ।

ନାଇକପୁଅ ମାଗତା କହିଲା, ସୁନାର ହାତ ଛାଡ଼ିଦେରେ ବାଘ୍ୱା । ମୁଁ ତାର ସାଥିରେ ନାଚିବ ।

ବାପଛେଉଣ୍ଡି ଲତା ମାଗତାର ହାତ କଟମଟ କରି ଧରି କହିଲା, ଆରେ ମାଗତା, ବାଘ୍ୱା ସୁନା ସାଥିରେ ନାଚୁ । ଆ, ତୋର ମୋ'ର ନାଚିବା ।

ମାଗତା ରାଗରେ ଫଁ ଫଁ ହୋଇ, ଆଖି ରଙ୍ଗ କରି, ମୁହଁ ବୁଲାଇ ଲତାକୁ ଚାହିଁଲା । ତା' ହାତରୁ ଜୋରରେ ହାତ ଟାଣି ଆଣି କହିଲା, ତୁ ଯା'ନ୍ନେ ବାଘ୍ୱା ସାଥିରେ ନାଚିବୁ । ଜାଣୁ ନାହିଁ କି, ସୁନା ଜାନିର ଝିଅ, ଆଉ ମୁଁ ନାଇକର ପୁଅ । ବାଘ୍ୱାର ଯେମିତି ବାପ ନାହିଁ, ତୋ'ର ବି ସେମିତି ବାପ ମା ନାହିଁ । ବାଇଆ କୁଲି ଭୂତି କରି ଖାଉଛି, ଆଉ, ତୁ ବି କୁଲି ଭୂତି କରୁଛୁ । ତା' ହାତ ଧରି ତୁ ନାଚିଲେ ଯିନା ସାଜିବ—

ଜାନିର ଝିଅ ସୁନା ମାଗତାର ହାତରୁ ହାତ ଖସାଇ ନେଇ, ବାଘ୍ୱାର ଗୋଟିଏ ହାତ ଧରି ହସି ହସି କହିଲା, କେମିତି ବେଢଙ୍ଗ କଥା କହୁଛୁ ତୁ ମାଗତା । ଆମର ଚଇତ ପରବ ନାଚ । ଏଇ ଡୋଙ୍ଗର ତଳେ ଜଙ୍ଗଲ ଭିତରେ ସମସ୍ତେ ଆମେ ସମାନ । ଏଠି ଆଉ ନାଇକାର ପୁଅ କି ଜାନିର ଝିଅ କହିଲେ ଚଳିବ ନାହିଁ । ଆମେ ସମସ୍ତେ ଏକା, ସମସ୍ତେ ଆମେ ଏଇ ବଣ, ଜଙ୍ଗଲ, ଲହଡ଼ିଆ ପାହାଡ଼ ମାଳର ଝିଅ । ଦେଖ୍ ତ, କେଡ଼େ ଖୁସିରେ ଲତା ତୋ'ର ହାତ ଧରିଥିଲା, ତୁ ହାତ ଟାଣିନେଲୁ । ଲତାର ମନରେ ଦୁଃଖ ଦେଲୁ ।

ମାଗତା କହିଲା, ମୁଁ କେଡ଼େ ଖୁସିରେ ଆଗ ତୋ'ର ହାତ ଧରିଲି ଯେ— ଅନାଥ ପିଲା ବାଘ୍ୱା କହିଲା, ନାଇଁ ନାଇଁ, ତୋ ଆଗରୁ ମୁଁ ସୁନାର ହାତ ଧରିଛି । ସୁନା ସାଥିରେ ମୁଁ ନାଚିବି । କରେ ମାଗତା ତୁ ନାଇକର ପୁଅ ହେଲୁ ତ କ'ଣ ହେଲା, ଆଇଲୁ ଦେଖି ଲଢ଼ିବା କାହା ଦେହରେ ବେଶୀ ତାକତ । ଆରେ ମାଗତା, ରାତି ଅଧରେ ସେଇ ଡୋଙ୍ଗର କଡ଼ରେ ଯେଉଁଠି ଗେଡ଼ୁଡ଼ାର ପାଣି ବ ଲଠି

ଉପରୁ ପଥର ଚଟାଣ ଉପରେ ପଡ଼ୁଛୁ, ସେଇଠି ଘାସ ବଣ ଭିତରେ ଛପି ଛପି ଯାଇ ମୁଁ ଏଇ ଟାଙ୍ଗିରେ ଜଆଦ ପିଲ ମାଇଲି । ପାରୁନୁ କ ତୁଇ ? ନାଇକର ପୁଅ ବୋଲି ଟାଣ କରୁଛୁ ଯେ !

ମାଗତା ରଗରଗ ହୋଇ କହିଲା, ଖରା କଥାଟେ କହିଲୁରେ । ତୋର ବାପ ମୋପାକା ତେଙ୍ଗ୍‌କୁ ବାଘ ଖାଇଲା । ତୋର ମା'କୁ ସାପ ଗୋବେଇଲା । ତୋ ବାପ ଆଜ ବାଘ-ଡୁମା (ଭୂତ) ହେଇଛ, ମା ହେଇଛ ସାପ-ଡୁମା । ସେଥିଲାଗି ବାଘ କ ସାପକୁ ତୋର ଡରଭୟ ନାହିଁ । ଚଢ଼ିବୁ କ ସେଇ ମହୁଲଗଛର ଅଗ ଡାଳରେ ? ଖଙ୍ଗି ପାଇବୁ କାଉ-ବସା ?

ପୁଙ୍ଗି ଗୋଟିଏ କନ୍ଧ ଟୋକା । ଭଲ ଧାଙ୍ଗଡ଼ା ବୋଲି ତାର ଖ୍ୟାତି ଅଛି । ସେ କହିଲା, ହେ ମାଗତା, ଆରେ କଜିଆ କାଇଁକି କରୁଛୁ ? ତୁଇ ଜନମ ହେଲାବେଳେ ଦିଶାରି କହିଲା ତୋର ଡୁମା (ଅତ୍ମା) ମାଙ୍କଡ଼ ଡୁମା । ସେଥିଲାଗି ତୁ ଗଛର ସବୁ ଡାଳରେ ଚଢ଼ିବୁ ସିନା । ଆଉ କିଏ ଚଢ଼ିବ ? କାଇଁ କ ପୁଲକ ?

ପୁଲକ କହିଲା, ପୁଙ୍ଗି ଯାହା କହିଲା ସତ । ମାଙ୍କଡ଼ ଡୁମା ବୋଲି ମାଗତା ମିଛଟାରେ କଜିଆ କରେ । ନାଚନ୍ତୁ ତାକୁ ଧର । ସୁନା ବାସ୍ନାକୁ ଧର ନାଚୁ ।

ଲତା ପୁଣି ଧରିଲା ମାଗତାର ହାତ । ମାଗତା ହାତ ଟାଣିଆଣି ଲତାକୁ ଠେଲିଦେଲା । ଲତା ପଡ଼ି ଯାଉଁ ଯାଉଁ ଅଟକି ଯାଇ କହିଲା, ମାଗତା, ସୁନା ସୁନା ହୋଇ ତୁ ପାଗଳା ହେଉଛୁ । ଜାଣୁ, ସୁନା ତତେ ଦେଖିପାରେ ନାହିଁ ? ସୁନା ବାସ୍ନାକୁ ଭଲପାଏ ।

ମାଗତା ପଚାରିଲା, ସତେ ସୁନା ?

ସୁନା ଚମ୍ ଚମ୍ ହେଇ ଛଳେଇ କହିଲା, ତୁ ଯେମିତ ମିଛ କଥାରେ କଜିଆ କରୁ, ବାସ୍ନା କ'ଣ ସେମିତ କଜିଆ କରେ ? ସେ ଭଲ ଧାଙ୍ଗଡ଼ା, ଗଭର ହେଲା ତ କ ହେଲା ? ତତେ କେହି ଭଲ ପାଇବେ ନାହିଁ । ତୁ ଲତା ସାଥିରେ ଆଜ ନାଚ । କାଲିଅରେ ବାଜା ।

ଡମ୍ବ ପିଲମାନେ ବାଜା ବଜାଇଲେ । ହଲ ହଲ ହୋଇ ଚୋକା ଚୋକୀ ପୁଣି ନାଚଲେ, ଗୀତ ବୋଲିଲେ । ଗୋଟିଏ କଡ଼ରେ ଠିଆ ହୋଇ ମାଗତା ପୁନା ଆଡ଼କୁ ଅନାଇଁ ରହିଲା । ଆର କଡ଼ରେ ଠିଆ ହୋଇ ଲତା ଆକୁଳ ଆଖିରେ ଚାହିଁ ରହିଲା ମାଗତାକୁ । ନାଚ ସେନେଇ ଆସିଲା । ଲତା ଛଡ଼ା ହୋଇଥିବା ପାଖରୁ ହଠାତ୍ ବୁଢ଼ି ଡମ୍ବ କନାମ ଗାଁ ବାଉଳ ଚୋକା ଧଇଁସଇଁ ହୋଇ ନାଟ ଜାଗାରେ ପହଞ୍ଚିଲା । ତା ସଙ୍ଗରେ ଆଉ ଦୁଇଜଣ ଡମ୍ବ ପିଲା ଅଛନ୍ତି ।

ବୁଢ଼ି ଡମ୍ବ ହାତଟେକି କହିଲା, ନାଚ ବନ୍ଦ କର । ବାଜା ଗୀତ ବନ୍ଦ କର । ଶୁଣ, ଖୁବ ମଜା । ବଡ଼ ଶିକାର—

ନାଚ ବନ୍ଦ ହେଲା । ଝିଅ ପୁଅ ହାତ ଛଡ଼ାଛଡ଼ି ହୋଇ ଡମ୍ବ ଚୋକାକୁ ଘେରିଗଲେ ।

ପୁନା ଧରିଲା ଲତାର ହାତ ।

ବୁଢ଼ି ଧଇଁସଇଁ ହୋଇ କହିବାକୁ ଲାଗିଲା, ଆରେ ବାପ୍ପା, ହେ ମାଗତା, ଡ଼ୁଡ଼ୁମା (ଜଳପ୍ରପାତ) ପାଖରେ, ସେ ଉଦନଟିକିଆ ମହୁଲଗଛ ତଳେ ଜଆଦ ପାଣି ପିଇବାକୁ ପଡ଼ିଲେ ।

ବାପ୍ପା ଖୁସି ହୋଇ ପଚାରିଲା—ଏଁ ସତେ ?

ହଁ, ରେ ହଁ । ନାଚ ବନ୍ଦ କର । ଆସ ସମସ୍ତେ ଧନୁଶର ଧରି ଯିବା ।

ହଁ, ଝୋଲ ଭିତରେ ଲୁଚି ଲୁଚି ଯିବା—

କନ୍ଧ ପିଲମାନେ ଖୁସି ହୋଇ ଡମ୍ବପିଲଙ୍କ ପଛେ ପଛେ ପାଖରେ ଚାଲିଗଲେ । ସବା ପଛରେ ମାଗତା । ପଛକୁ ପୁନା ଆଡ଼କୁ ଚାହିଁଚାହିଁ ଗଲା । ଝିଅମାନେ ଆଉ ଗୋଟିଏ ବାଟରେ ଗଲେ । ଲତା ସଭିଙ୍କ ପଛରେ ମାଗତା ଆଡ଼କୁ ଚାହିଁ, ହସିବା ମୁହଁରେ ପୁନାର ହାତ ଧରି ଚାଲିଗଲା ।

ପୁଟି ଗାଁ କନ୍ଧ ପଲ୍ଲୀ ।

ଛୋଟ ଛୋଟ ନୁଆଁଣିଆ ଚାଳଘର । ଘରଗୁଡ଼ିକର ଆଗପିଣ୍ଡା ରଙ୍ଗମାଟିରେ ଲିପା । ଗାଁ ମଝିରେ ନାଏକ ବାଡ଼ାକା ଭେଡ଼କାର ଘର ଟିକିଏ ବଡ଼ । ଘର ଆଗରେ ଗାଁ । ଦାଣ୍ଡର ପଥୁରିଆ ରାସ୍ତା ଉପରେ ବାଉଁଶ ଚଳେଇ ଘର ହୋଇଛି । ଠିକ ଦଶଟା ହେବ । ଟଙ୍ଗେଇ ଉପରେ କେତେଜଣ କନ୍ଧ ନାହୁରୁମ୍ବା ଧରି ବସିଛନ୍ତି । ମହୁହାଣ୍ଡି ପାଖରେ ଧାଙ୍ଗଡ଼ା ମାଝି ତୁମ୍ବା ଧରି ଠିଆ ହୋଇଛି । ପାଖରେ ଅଛି ନେଟି ଗାଁର ବାରିକ୍ ହୁଆଲେ ବୁଦ୍ଧି ଡମ୍ବ ।

ବୁଦ୍ଧି ଡମ୍ବ ନାଇକ ପାଖକୁ ଗଲା । ସେ ବାରିକ, କନ୍ଧଲୋକଙ୍କ ବିବେକ । ସେ କହିଲା, କେମିତି କଥା କହୁଛୁ ନୋକା, କନାମ ଗାଁର ନାଇକ ହେଲୁ ତ କ'ଣ ହେଲା ? ବୁଢ଼ାହେଲ ପୁଢ଼, ପାଞ୍ଚ ହଳ ଚାଷ ବାହୁଛୁ, ନେ ଗଡ଼ଶା ଭୂମି ଗ୍ରାସ କରୁଛୁ ସତ, ତୋ ପୁଅ ମାଗତାଟା କ'ଣ ମଣିଷ କରେ ? ଫୁଙ୍କି ଦେଲେ ଟଳିପଡ଼ିବ । ଡୋଙ୍ଗର ଉପରକୁ ଥରେ ଚଢ଼ି ଓହ୍ଲାଇ ଆସିଲେ ଦରମରା ହେବ । ସେ କ'ଣ ଭେଡ଼କା ନାଏକର ଝିଅ ସୁନାର ନାଗି ହେବ ?

ପାଖରେ କନ୍ଧଟୋକା ପୁଙ୍ଗି ଠିଆ ହୋଇଥିଲା । ସେ ବୁଦ୍ଧିଡମ୍ବର କଥାକୁ ସମର୍ଥନ କରି କହିଲା, ବାରିକପିଲା ଠିକ୍ କଥା କହିଲା । ସେଦିନ ଜଅଦ୍ ଶିକାର୍ କରିବାକୁ ଲୁକି ଲୁକି ଗଲୁଁ । ବାଘୁଆ ଟାଙ୍ଗିରେ ମାରିଲା ଜଅଦ । ମୁଁ ମାଇଲି କାଣ୍ଡରେ । ନାଁକ ବାରିକ ? ସନ୍ତ ହୋଇ ଆସୁଥିଲା । ଗୋଟାଏ କାଣ୍ଡରୁ ଦୁଇଟା ମାରିନାଇଁ ତ । ଆଉ ମାଗତା, ଧାଇଁ ଧାଇଁ ଗଲା, ଝୋଲା (ନାଲ)ରେ ପଡ଼ିଲା । ଆଣ୍ଠୁ ଗଣ୍ଠି ଛିଣ୍ଡିଲା । କାନ୍ଦିଲା ବୋଲି ବଞ୍ଚିଗଲା । ଫିରିକ ଘାସ ଭିତରେ ଯେମିତି ଖସ୍ ଖସ୍ ହେଉଥିଲା, ଧନୁରେ କାଣ୍ଡ ଚଢ଼େଇ ଥିଲି ତ । ମୁଁ ସିନା ଭାବିଲି ଜଅଦ ପିଲା । ଭାଗ୍ୟକୁ ବାରିକ ପିଲା ମୋ'ର ହାତ ଧରି ଟାଣିଆଣିଲା । ନୋହିଲେ—

ବୁଦ୍ଧି ସମର୍ଥନ କରି କହିଲା । ସତ କଥା । ହେ ନୋକା ନାଇକ, ମୋ'ର କଥାଟି କର । ଉର୍ଲକା ବାସୁର ଝିଅ ଲତା । ଭଲ ପିଲାଟେରେ । ତୋ ପୁଅ ମାଗତା ପରି ସରୁ । ମାଗତାକୁ ସେ ଚାହେଁ । ତାକୁ ତୁ ବୋହୂ କରି ନେ । ଆଚ୍ଛା ଭଣାର, ଲତା କାହାର ଡୁମାରେ ? ମାଗତାର ସିନା ମାଙ୍କଡ଼ ଡୁମା ।

ମଦ ନିଶାରେ ଆଖି ରଙ୍ଗ ଦିଶୁଛି ଦଶାରିର । ବୁଢାଲୋକ, ମୁଣ୍ଡ ଚନ୍ଦା । ତଳକୁ ଚାହିଁ, ତଳେ ଗାର ପକାଇ ଭୁଷ୍ଟ୍ ଭୁଷ୍ଟ୍ ହେଲା । ପୁଣି ଉପରକୁ ଚାହିଁଲା । ତଳକୁ ଚାହିଁଲା । ଆଖି ମିଞ୍ଜି ମିଞ୍ଜି କରି କହିଲା, କାଲିପରି ଲାଗୁଛିରେ, ଲତାର ବାପ ଯେତେବେଳେ ମତେ ଡାକି କହିଲା, ହେ ଦଶାରି, ଝିଅଟେ ଜନମ ହେଇଚି, କାହାର ତୁମାରେ ? କହିଥିଲି, ବୋଲେଇ ତୁମା । ଉନ୍ଧିକା ବାପୁର ଥିଲା ମୂଷା ତୁମା । ବାପୁ ଚମକି ପଡ଼ିଲା । ମୁଁ ତାକୁ ବୁଝେଇ କହିଲି, ଆଚ୍ଛେ, ତୋ'ର ତୁମା ପାହାଡ଼ୀ ମୂଷା, ବଡ଼ ମୂଷା । ତୋ'ର ଝିଅଟା ବୋଲେଇ ତୁମା ହେଲା ତ କ'ଣ ହେଲା ? ଖାଇ ପାରିବ ନାହିଁ । କହିଥିଲି ପିନା କଥାଟେ, ବାପୁ ରହିଲା କି ? ବାର ବରଷ ପୁରିଲା ନାହିଁ । ଲତା ତାକୁ ଖାଇଦେଲା ।

ମିଲିକା ନୋକା ଆଶ୍ଚର୍ଯ୍ୟ ହୋଇ ଦଶାରିକୁ ଚାହିଁଲା । ବୁଢ଼ି ଓମୁ ଆଡ଼କୁ ମୁହଁ ଫେରାଇ କହିଲା, ଶୁଣିଲୁ ତ ବାରିକ ପୁଅ । ତୁ କେମିତି କହୁଛୁ ଲତାକୁ ବୋହୂ କରିବାକୁ ? ସୁନାର ତୁମା କିସରେ ଦଶାରି ?

ଦଶାରି ପୂର୍ବପରି ଗଣନା କରି କହିଲା, ଖୁଣ୍ଟୁରି ତୁମା ।

କାଡ଼ୁକା ଭେଣ୍ଡକା ଜାନି କହିଲା, ହଁ, ହଁ, ଖୁଣ୍ଟୁରି । ଜନମ ହେଲାବେଳେ ତୁ ସେଇଆ କହିଥିଲୁ ।

ଧାଙ୍ଗଡ଼ା ମାଟି କହିଲା, ତେବେ ତ—। କଥା ଶେଷ କରି ପାରିଲା ନାହିଁ । ମଦ ନିଶାରେ ମୁଣ୍ଡ ଝାଙ୍କି ଦେଉଛି । ସେ ଆଖି ବୁଜି ପାଟି ଯାକୁ ଯାକୁ କଲା ।

ନୋକା ତାର ମନର କଥା ବୁଝିଲା । କହିଲା, ଲତା ଆଉ ମାଗତା ବାହାହେଲେ କଜିଆ କରି ତାଙ୍କର ବେଳ କଟିବ । ଜଣେ ବୋଲେଇ ଆଉ ଜଣେ ମାଙ୍କଡ଼ । କି ଘର କରିବେ ସେମାନେ ? ନା, ନା, ଏହା ହେବନାହିଁ ।

ବୁଝି ପଚାରିଲା, ସୁନା ଆଉ ମାଗତା ବାହାହେଲେ କେଉଁ ଭଳିରେ ରହିବେ କି ? କହୁନୁ କାହିଁକି ଦଶାରି ? ଜଣେ ଗଛରେ ଚଢ଼ିଲେ ଆଉ ଜଣେ ବଣରେ ପଶିବ ନାହିଁ କି ?

ଦଶାର ଉତ୍ତର ଦେଲା, କନିଆଁ ତ ହେବନାହିଁ । ଭଲରେ ଘର ନ କରିବେ କାହିଁକି ?

ନୋକା ଖୁସିହୋଇ କହିଲା, ଶୁଣିଲୁ ତ ବାରିକ ? ଶୁଣିଲୁ ତ ଜାନି ? ମାଗତା ସୁନା ସୁନା ହୋଇ ପାଗଳ ହୋଇଛୁ । ସେଇ ଏକା ମତେ ତୋ' ପାଖକୁ ଜାଗର କରି ପଠେଇଛୁରେ ଭେଣ୍ଡିକା ଜାନି । କହିଲା, ଯା ବାପା, ଦ' ହାଣ୍ଡି ରନ୍ଧାମଦ ନେଇ ଯା । କଥା ଠିକ୍ କରି ଆ ।

ଭେଣ୍ଡିକା କହିଲା, ତେବେ ରେ ନୋକା, ମଦହାଣ୍ଡି ରଖିଦେଇ ଯା । ସୁନା କନ୍ଦା ଖୋଳିବାକୁ ଯାଇଛୁ । ସେ ଆସୁ । ଧାଙ୍ଗଡ଼ୀ ହେଲାଣି ସେ । ତାର ଯେମିତି ମନ । ତାକୁ ପଚ୍ଚାରି ତୋ ହାଣ୍ଡିରୁ ଯଦି ମଦ ଖାଇବ, ଜାଣିବୁ ସୁନାର ମନଅଛୁ । ମାଗତାକୁ ବାହା ହେବ । ମଦ ନ ଖାଇଲେ, ତୋ'ର ମଦ ତୁଇ ଫେରେଇ ନେବୁ ।

ଜଣେ ବୁଢ଼ାକନ୍ଧ ମୁଣ୍ଡ ହଲାଇ କହିଲା, ଭେଣ୍ଡିକା ଭଲ କଥା କହିଲରେ ନୋକା ।

ସତେ ସେଇଆ କର ତୁ ନୋକା, ବୁଦ୍ଧି ପରାମର୍ଶ ଦେଲା ।

ନୋକା ଟିକିଏ ଭାବି କହିଲା, ଆରେ ଭେଣ୍ଡିକା, ଝିଅ ଧାଙ୍ଗଡ଼ୀ ହେଲା ବୋଲି ତା'ର ବୁଦ୍ଧି ହେଲା କି ? ସେ କି ଭଲ ମନ୍ଦ ଜାଣିବରେ ? ତୁ ଜାନି, ମୁଁ ନାଇକ । ତୋ ଝିଅ ମୋ ବୋହୂ ହେଲେ, ଲୋକେ ଭଲ କହିବେ । ଦହିଁଙ୍କର ମାନ ବଢ଼ିବ ।

ଦଶାର କହିଲା, ସତ କଥା । ତୁ ଯାହା ଠିକ୍ କରିବୁ ସେଇଆ ହେବ । ସୁନା କ'ଣ ତୋ' କଥାର ବାହାର ହେବ କି ନୋକା ନାଇକ ? ସୁନା ଅତି ଭଲପିଲା । ଗାଁଟାରେ ଝିଅ ଖଣ୍ଡେ ତ !

ଆଉ ଜଣେ କନ୍ଧ ପ୍ରୀତି ଜଣାଇ କହିଲା, ସୁନା ଭଲ ପିଲା । ଏ ଗାଁରେ ତା'ପରି କୁହାର ବୋଲର ଝିଅ ନାହିଁ । କେଡ଼େ ବୁଦ୍ଧି ତା'ର । ହେ ଜାନି, ତୁ ଯାହା କହିବୁ ସେ ମାନିବ । ଧାଙ୍ଗଡ଼ୀ ମାଝି, ଦେ ରେ ମଦ ।

ମଦ ଦେବାକୁ ଧାଙ୍ଗଡ଼ା ମାଝି ଆଗେଇ ଆସିଲା । ହାତ ଟେକ ଭେଣ୍ଡିକା ବନ୍ଦ କଲା । ଏଣିକି ତେଣିକି ଚାହିଁ କାହାକୁ ଖୋଜିଲା ପରି ହୋଇ କହିଲା, ସୁନା ନାହିଁ କି ତା' ମା ନାହିଁ । ତୋର ମଦ ଖାଇ ମୁଁ କେମିତି ଫେକ୍‌କା ଜବାବ ଦେବି ନୋକୀ ? ତୋ ମଦ ମୁଁ ଖାଇଲେ ଜବାବ ଦେଲାପରି ହେବ ନାହିଁ କି ? ମୋ ମଦ ମୁଁ ଖାଇଛି ସିନା !

ବୁଢ଼ି ଉତ୍ତର କହିଲା, ହେବ ଏକା । ତା ପରେ, କଥା ଛିଡ଼ିବା ଆଗରୁ ଗାଁ ଲୋକେ ପୁଣି ଜାଣିବେ—ଖାଇବାକୁ ତୁ କ'ଣ ଦେବୁ ? ତମ କୁଳର ପ୍ରଥା ଯେମିତି, ସୁନାର ବାପକୁ ସିନା ଷୋଳ ଟଙ୍କା କୋଡ଼ିଏ ଏକ ଦେବୁ । ଆଗ କହ ଗାଁ ଲୋକଙ୍କ ଖାଇବାକୁ କେଇ ମୁଣ୍ଡ ଗାଈ ଦେବୁ, କେତେ ହାଣ୍ଡି ମଦ ଦେବୁ, କେତେ ଟଙ୍କା ଦେବୁ ।

ଦାଉ ନ ସତ କଥା କହୁଛି । ଦଶାରି କହିଲା ।

ନୋକା ଚିନ୍ତା କରି, ହସି ହସି କହିଲା, ଏଇ କଥା ବାକି ରହିବ କି ? ଆରେ ମାଝି, ଦେ ରେ ମଦ । ତଣ୍ଟି ଶୁଖି ଯାଇଛି । ପିଅରେ ଏ ମଦଟା ବାହାଘର ମଦ ନୁହେଁ । ସେହି ତୋଙ୍ଗର ଉପରେ ମାଗଣା ରହିଥିଲା । ଗାଁ ଲୋକେ ଆମେ ବସି କରି ଏକାଠି ଖାଇବା ନାହିଁକି ? ଚଇତ ପରବ ଯେ ଆସୁଛି । ଦେଏରେ ଧାଙ୍ଗଡ଼ା ମାଝି ।

ଧାଙ୍ଗଡ଼ାମାଝି ମଦ ଢାଳିଲା । ସମସ୍ତେ ନିଜ ନିଜର ଡାଲୁତୁମ୍ବାରେ ପିଇଲେ ।

ବୁଢ଼ି କହିଲା, ସମସ୍ତେ ତ ତୋର ମଦ ଖାଇଲେ ନାଇକ, ତୁଇ ଏବେ କହ, ଗାଁ ଲୋକଙ୍କ ଖାଇବାକୁ ଦି ମୁଣ୍ଡ ଗାଈ ଦେବୁ, ତିନି ହାଣ୍ଡି ମଦ ଦେବୁ, ଦି କୋଡ଼ି ଟଙ୍କା ଦେବୁ—

ନୋକା ସମ୍ମତି ଜଣାଇ କହିଲା ଦେବି ରେ, ନିଶ୍ଚେ ଦେବି । ଗୋଟେ ତ ପୁଅ ମୋ'ର ମାଗଣା । ସୁନାକୁ ବୋହୂ କରି ଘରକୁ ନେବି, ଏତକ କ'ଣ ଦେବି ନାହିଁ କି ? ଭେଣ୍ଡିକା, ତୁ ମତେ କଥା ଦେ; ଜବାବ୍ ଫେକ୍‌କା ହେଉ । ମାଗଣାକୁ ମୁଁ କହିବି ।

ଦଶାର ପ୍ରଇଷ୍ଠାଇଲା ଦୃଷ୍ଟିରେ ଭେଣ୍ଡିକାକୁ ଚ୍ଛହିଁ କହିଲା, ସବୁ କଥା ତ ଛୁଣ୍ଡିଲା, କବାବ ଦେ ଜାନ ।

ସୁନାବୋଉଙ୍କୁ ପଚ୍ଛର ମୁଁ କହିବ । ସୁନାକୁ ପଗ୍ଭରିବେ ନାହିଁ । ତା ବୋଉ ପଦ ଗଜହୁଏ, ମୋର ବଜ । ଆମ କଥାରୁ ସୁନା ବାହାର ହେବ ନାହିଁ ।

ଲଚ୍ଛା ପାଣିମାଠିଆ ଧର ଗୋଟିଏ ଚାଙ୍ଗରୁ ଅସୁ ଅସୁ ସମସ୍ତଙ୍କୁ ଥରେ ଚ୍ଛହିଁଲା ସେମାନଙ୍କୁ ମଦ ଖାଉଥିବାର ଦେଖି ସେ ସାବଧାନ କରିବାକୁ କହିଲା, ଲଦ୍ଧା ମଦ କ ରେ ଧାଙ୍ଗଡ଼ାମାନେ ? ଗେଡ଼ା (ନାଲ) ଆଡ଼ୁ ସଲ୍‌ଟ୍ରଜମାନ (ଏକ୍‌ସାଇଜ ପିଅନ) ଆସୁଛି । ତା ସଙ୍ଗେ ଆଉ କେତେ ଲୋକ ଅଛନ୍ତି । ଦୂରରୁ ଦେଖି ମୁଁ ଧାଇଁ ଆଇଲ ।

ସଲ୍‌ଟ୍ରଜମାନ ନାମ ଶୁଣି ସମସ୍ତେ ଉଦ୍‌ବେଗିତ ହେଲେ । ଅସ୍ତବ୍ୟସ୍ତ ହୋଇ ଠିଅ ହେଲେ । ଆକୁଳ ବ୍ୟାକୁଳ ଆଖିରେ ଚ୍ଛରିଆଡ଼କୁ ଚ୍ଛହିଁଲେ ।

ବୁର୍ଦ୍ଧି ବାରକ୍‌ ପଗ୍ଭରିଲା, ହେ ଲଚ୍ଛା, ସଲ୍‌ଟ୍ରଜମାନ ବୋଲ କପର ଜାଣିଲୁ ? ଆଉ କିଏ ହୋଇଥିବ ।

ତାକୁ ମୁଁ ଭଲକର ଚହ୍ନେରେ । କେତେ ଦନ ହେଲାଣି, ଆଉଥରେ ସେ ଆସି ନ ଥିଲା କ ? ଯେଉଁ ଥରେ ଆସି ଉର୍ଲାକା ଦେଗ୍ଭ ଓ ସାଗ୍ଭକା ଧାନକୁ ଧରନେଇ ଶିକ୍ଷା କରେଇଲା (ଜେଲ ଖେଗେଇଲା) । ଜାଣେରେ ତାକୁ ମୁଁ, ମତେ ବି ସେ ଚହ୍ନିଛି ।

ତତେ କେମିତି ଚହ୍ନିଲରେ ଝୋକ ? ଜାନ ପଗ୍ଭରିଲ ।

ତୋଙ୍ଗର ତଳେ ମୁଁ ବସି କନ୍ଦା ଖୋଳୁଥିଲ, ସେ ତେଣୁ ଅଇଲ ତ । ମତେ କେତେ କଥା ପଗ୍ଭରିଲ । କହିଲ, ମାଳ ଦେବ, ପାନିଆ ଦର୍ପଣ ଦେବ, ଖଦ ଦେବ । ମୁଁ ଗ୍ଭଲିବ ସିନା ସତରେ । ମୋର ହାତ ଧର କେତେ ବାଟ ଗ୍ଭଲିଲ । ସେଇ ଯୋଉ ବଣ ଭିତରେ ମୋ ହାତକୁ ଟାଣିନେଇ ମୋ କାନ୍ଧରେ ହାତ ପକାଇଲ—

ଏଁ, ସତରେ ?

ହିଁ ରେ । ଦ ଗାଳରେ ତାର ଦ ଗୁପୁଡ଼ା ଥୋଇଲ । ଖଣର ଉଠେଇ କହିଲ, ଧଇଲୁ ଜମାନ୍ ମୋ' ହାତ ତୋ କାନ୍ଧରୁ ମୁଣ୍ଡଟା ଛୁଡ଼େଇଦେବ । ମଠ ଚଡଥିଲ । ମୁଁ କହିଲ, ମଦ କ'ଣ ମୁଁ ଘନେ କ ତତେ ଡରିବ ? ସେଇ ଜମାନ୍ ଆଉଚରେ ବୁଢ଼ିଆ । ତମକୁ ସବୁ ଧର ଶିକ୍ଷାଦେବ ।

ସମସ୍ତେ ଭୟରେ ବୁଢ଼ି ବାଣକକୁ ଚାହିଁଲେ । ବୁଢ଼ି କ୍ଷଣକାଳ କ୍ରୋଧକର କହିଲ, ହେ ନୋକା, ଭଡ଼କା ତମେ ସବୁ ମଦ ହାଣ୍ଡି ନେଇ ଚାଲଯା । ଯା, ଯା, — । ଭଡ଼କା ଦ'ଟା କୁକୁଡ଼ା ଦେ ଘରୁ ଧରିଅ ତ ।

ମଦ ହାଣ୍ଡିନେଇ ସମସ୍ତେ ପ୍ରସ୍ଥାନ କଲେ । କେବଳ, ଲତା ଓ ଭଡ଼କା ବୁଢ଼ି ଡମ୍ବ ପାଖରେ ରହିଲେ । ଭଡ଼କା ପଚାରିଲ, ଦଟା କୁକୁଡ଼ା ନା' ବାଣକ ପୂଅ ?

ହିଁ ରେ ହିଁ ।

ଭଡ଼କା ଚାଲିଗଲା । ଲତା ପଚାରିଲ, କୁକୁଡ଼ା କ'ଣ ହେବ ବାଣକ ?

ଜମାନ ମତେ ମାଗିଥିଲା । ପୁଣି କହିଥିଲା, ତତେ ବ ନେବାକୁ ସଙ୍ଗରେ ।

ମତେ ? ତାଆର ଏତେ ସାହସ ? ତୋର ଏତେ ବହପ ?

ଲତାର କାଖରୁ ପାଣିମାଠିଆ ଖସିପଡ଼ିଲା । ରାଗରେ କଟମଟ କର ଚାହିଁଲା ଡମ୍ବକୁ । ବୁଢ଼ିଆ କେବଳ ହସିବାକୁ ଲାଗିଲା ।

ସିପିଗାଁର କନ୍ଧ ପଲ୍ଲୀ ବାହାରେ ଶ୍ରେଷ୍ଠ ଡୋଙ୍ଗର, ଲଣ୍ଡାମୁଣ୍ଡିଆ, ତାହାର ତଳେ ଜଙ୍ଗଲ ଭିତରେ ଖଣ୍ଡେ ପଥର ଚଟାଣ । ସାମ୍ନାରେ ଗେଡ଼୍ଡ଼ା, ଚାରଣ ହାତ ଚୌଡ଼ା । ସବୁ ଝରଣାଟିଏ ପଥର ଗଦା ଉପରେ ଝିପିଝିପି ହୋଇ ବହିଯାଉଛି । ଗେଡ଼୍ଡ଼ା ଆରପାଖେ ସମତଳ ଭୂଇଁ । ସେପାଖକୁ ଘଞ୍ଚ ଅରଣ୍ୟ ବେଢ଼ା ପାହାଡ଼ମାଳ ବମାନ ପରି ଖଞ୍ଜା ହୋଇଛି ।

ପଥର ଚଟାଣ ଉପରେ ପାଖାପାଖି ହୋଇ କପୋତ କପୋତୀ ପରି ବସିଛନ୍ତି ସୁନା ଓ ବାପ୍ପା । ବାପ୍ପା ଗମ୍ଭୀର ଦେଖାଯାଉଛି । ସୁନା ଗେଡ଼ଗଡ଼ାର କଳକଳ ଝରଣା ପରି ମୁଖର, ହାସ୍ୟମୟୀ । ଗୁନ୍ଥୁଛି ଫୁଲର ମାଳ ।

ଅପରାହ୍ଣ । ଆକାଶର ମଥା ଉପରୁ ସୂର୍ଯ୍ୟ ପଶ୍ଚିମ ପାହାଡ଼ମାଳ ଉପରକୁ ଓହ୍ଲାଇ ଆସୁଛନ୍ତି ।

ବାପ୍ପାର ବଳିଷ୍ଠ ବାହୁ ହଲାଇଦେଇ ମୁହଁ ପାଖକୁ ମୁହଁ ନେଇ ସୁନା କହିଲା, ମୁହଁ ଶୁଖାଇ ବସିଲେ କଅଣ ହେବରେ ବାପ୍ପା ? ମୋ ମାଆ ସିନା ମନା କଲା, ମୋ ବାପା ନୋକା ନାଏକଙ୍କୁ କଥା ଦେଲା, ମତେ ତ କେହି ପଚାରିଲେ ନାହିଁ ? ବାପ, ମା, ଭାଇ ସମସ୍ତେ ମତେ ଭଲ ପାଆନ୍ତି । ମୁଁ କେବେ ସେମାନଙ୍କ କଥାରୁ ବାହାର ହୁଏ ନାହିଁ । ତା' ବୋଲି କ'ଣ ତାଙ୍କ କଥାରେ ପଡ଼ି ମାଗତାର ହାତ ଧରି ଯିବି କି ?

ସୁନା ଡବ ଡବ କରି ଦୂରର ପାହାଡ଼ମାଳ ଆଡ଼କୁ ଚାହିଁଲା । ଦୁଇପାଖର ସବୁଜ ବଣ ମଝିରେ କଳା ମିଚ ମିଚ ଗଡ଼ାଣିଆ ପଥର ଚଟାଣ । ସେଇ ଚଟାଣ ମଝିରେ ସିଧାସଳଖ ପାଣି ଧାରଟିଏ ଗଡ଼ି ଆସୁଛି । ସୂର୍ଯ୍ୟ କିରଣରେ ରୁପାପରି ଝଟକି ଉଠୁଛି । ସୁନାର ଆଖି ସେଇଠି ଲାଖିଲା । ବାପ୍ପା ସେଇ ରୂପେଲି ଚଟାଣକୁ ଚାହିଁ ଦୁଃଖ ମିଶା ସ୍ୱରରେ କହିଲା, ଆମ କୁଳରେ ବାପ ମା କଥାରୁ କେହି କେବେ ବାହାର ହୋଇ ନାହିଁ । ସମସ୍ତେ ଯେତେବେଳେ କଥା ଠିକ୍ କଲେ, ତୋ'ର ଆଉ ଅନ୍ୟ ଗତି ନାହିଁ । କନାମ ଗାଁର ନୋକା ନାଇକ ପୁଅ ମାଗତା ଘରକୁ ତୁ ଯିବୁ । ସେ ହେବ ତୋର ଧାଙ୍ଗଡ଼ା । ତୁଇ ଜାନର ଝିଅ ମର ଗାଁର ନାଇକର ବୋହୂ ହେବୁ । ଭଲ ହେବ ସୁନା ।

ସୁନା ପର୍ବତମାଳାରୁ ଦୃଷ୍ଟି ଫେରାଇଲା ପାଦତଳେ ଗଡ଼ିଯାଉଥିବା ଝରଣାର ପାଣିକୁ । ପଛଆଡ଼ ଜଙ୍ଗଲ ଭିତରୁ ଝିଙ୍କାରି ପଲର ଝିଁ ଝିଁ ଶବ୍ଦ କାନରେ ବାଜୁଛି । ଶ୍ରେଷ୍ଠ ପାହାଡ଼ ଗଡ଼ାଣିରେ ଅସୁମାର ବଣମଲ୍ଲୀ ଲଦାରେ ନକ୍ଷତ୍ରମାନଙ୍କର ମହୋତ୍ସବ ପରି ଅସୁମାର ଫୁଲ । ଧୀର ପବନରେ ବାସ ଚହଟି

ନାଚରେ ବାଜୁଛୁ । ମନ ଆଜି ହଲୁସି ଉଠୁ ନାହିଁ । ବାପ୍ପାର କଠୋର କଥାରେ ତାର ଟିକି ମନରେ ଦୁଃଖ ବଢ଼ୁଦ ହଉଛୁ । ସେ ଆଖି ଛଳଛଳ ମୁହଁ ଫଣଫଣ କରି କହିଲା, ମାଗଡା ଘରକୁ ମୁଁ ଯିବ ? ମାଗଡା, ମାଙ୍କଡ଼ ପରି ସେ ଡରୁଆ, ଫୁଙ୍କିଦେଲେ ଝଲି ପଡ଼ିବ । ବେଶୀ ମଦ ଖାଏ । ପାଗଳା ହୋଇ ଜଙ୍ଗଲ ମଝିରେ ବୁଲେ । ଅଚେତ୍ ହୋଇପଡ଼େ । ତୋଙ୍ଗର ଉପରେ ଲୁଚି କରି ମଦ ଗନ୍ଧ ଛୁ । ପିଲ୍ଟୁକମାନେ ତାକୁ ଢନଅର ଚୁଡ଼ିଲାଣି । ଏଥର ଧରିଲେ ଶିକ୍ଷା କରେଇବ । ସେଇ ମାଗଡାକୁ ମୁଁ ଭଲ ପାଏ ନା ।

ମାଗଡା ତେଜେ ଭଲପାଏ । ତଡେ ସେ ଗ୍ଚହେଁ—

ସତେ ? ହସିହସିକା ସୁନା କହିଲା, ମାଗଡା କାହାକୁ ଭଲପାଏ ନାହିଁ । ଆରବରଷ ଏଇଦିନେ ସେ ଡାଙ୍ଗା ହନୁମତୀକୁ ସେମିତ କହିଥିଲା । ତା ହାଥରେ ତଙ୍ଗର ଉପରକୁ ଯାଇ ଦିନଦିନ ରହିଲା । ଖୋଲା ଝଙ୍କା ଦେଲା ନାହିଁ । ବାହା ହେଲା ନାହିଁ । ହନୁମତୀ କାନ୍ଦି କାନ୍ଦି ଗୋଟାଏ ଟିରିବ୍ଧାନ ଡମ୍ବ ପିଲାକୁ ଧରି ଆସାମ ଗଲା ଗ୍ଚ ତୋଲିବାକୁ । ଜଣୁ ନାହିଁ କି ?

ଜାଣେ । ହନୁମତୀ ମୋର ପରି ବାପ ମା ନ ଥିଲା ପିଲା । ବୁଲି ଭୁଲି କରୁଥିଲା । ତା ର କେହି ନ ଥିଲେ ବୋଲି ନାଇକ ପୁଅ ମାଗଡା ସିନା ଏପରି କାମ କଲା । ନାଇକ ଝିଅ ସୁନାକୁ ସେପରି ଦଗା ଦେବାକୁ ତା'ର ସାହସ ହେବ କି ? ତାର ମୁଣ୍ଡଟାକୁ ନାଇ କାଟି ଦେବ . ନାହିଁ କି ?

ହେଲା, ତେବେ ଲଡା ସଙ୍ଗରେ ଏମିତ ଖେଳିଲା କାହିଁକି ମାଗଡା ? ଲଡା ଯେବେ ଟିକିଟେ ହୋଇଥିଲା, ମାଗଡାର ବାପ ତାକୁ ବୋହୂ କରିବ ବୋଲି ମଦ ପାଣି ଦେଇ କହିଥିଲା ତ ! ଲଡା ଧାଙ୍ଗଡ଼ୀ ହେଲା ଯାଏ ଆଶା କରିଥିଲା, ମାଗଡା ଦିନେ ଆସିବ, ତାର ହାତ ଧରି ଘିନେଇବ । ମାଗଡାକୁ ଆମେ ଲଡାର ଅଣ୍ଡିରା ବୋଲି ଡାକୁ ନାହିଁକି ? ଲଡା ତ ଧାଙ୍ଗଡ଼ୀ ହେଲା । ସେ ଜାଣେ ମାଗଡା ତାର ଅଟିବ । ସେଥିଲାଗି ସେ ହଗୁଡ଼େଲେ ମାଗଡା ମାଗଡା ହେଉଛୁ । ଲୁଚି ଲୁଚି ମାଗଡା ପଛେ ଧାଉଁଛୁ । ମାଗଡା ତାକୁ ପଗ୍ଚରୁ ନାହିଁ ।

ବାପ୍ପା ପଗ୍ଚରିଲା, ସତେ କି ସୋନା ?

ବାପ୍ପାର ବଳିଷ୍ଠ ଚମ୍ପାଳିଆ ଗୋଲ ମୁହଁରେ ଅଶ୍ରଦ୍ଧର ଉଲ୍ଲାସ । ଉଜ୍ଜ୍ୱଳ ଆଖି ଝଲସି ଉଠିଲା । ବହ୍ଲଳ ନୟନରେ ସୁନାର ହଳଦୀ ମିଶା ଗୋଷ୍ଠୀର ବରନ ଡଉଲ ଆନନ୍ଦ ଓ ପୂରିଲା । ଯୌବନର ନବ ଓଠର ଶୋଭା ସମ୍ପଦକୁ ଅନାଇ ରହିଲା ।

ସୁନାର ଛଳ ଛଳ ଆଖିରେ ଅଳପ ସରମର ଆଭା ଖେଳିଲା । ସେ ଦୃଷ୍ଟି ଫେରାଇ କହିଲା, ଲତା ମତେ ଦବୁ ବନ୍ଧେ । କେତେ ଧାଙ୍ଗଡ଼ା ଅଇଲେ । ଲତାକୁ କହିଲେ, ହେ ଲତା, ମାଗତା ମାଗତା ହୋଇ ଝୁରି ମରିବୁ କି ? ମୋ ସାଥିରେ ଆ । କହିବୁ ଯାହା ତତେ ଓଟାରନେବ । ଲତା ମଙ୍ଗିଲା ନାହିଁ । ସେ କହିଲା, ଯା ଯା ରେ, ସେମିତି ହେଲେ କେତେ ଟୋକା ମତେ ମିଳିବେ । ନାଇକ ମଧ ପାଣି ଦେଇ ପାଞ୍ଚ ଗାଁର ଲୋକଙ୍କ ଆଗରେ ଛିଡ଼କଲା । ଦଶାର ମଙ୍ଗିଲା ଓ କହିଲା, ଲତା ନାଇକର ବୋହୂ । ରୁ କହ ତ ବାପ୍ପା, ଲତା ସୁନ୍ଦର ନୁହେଁ କି ? ଲତା ମୋର ପିଲା ଦିନର ସାଙ୍ଗ । ମୋ ଆଖିକି ସେ କେଡ଼େ ସୁନ୍ଦର ଦିଶେ !

ସୁନାର ମୁଣ୍ଡକୁ ଦୁଇ ହାତରେ ବାପ୍ପା ଟେକି ଧରିଲା । ବହ୍ଲଳ ଆଖିରେ ମୁହଁକୁ ଚାହିଁଲା । କହିଲା, ଲତା କ'ଣ ତୋଠୁ ସୁନ୍ଦର ସୁନା ? ତୋ ମୁହଁଟା ତୁ ଦେଖିଛୁ କି ? ଏଇ ଗେଡ଼୍ଡ଼ା ପାଣିରେ ଥରେ ଚାହିଁଲୁ । ବଲେ ବୁଝିବୁ । ଲତା ସୁନ୍ଦର କି ତୁ ସୁନ୍ଦର ?

କୃତ୍ରିମ କ୍ରୋଧ ଓ ଅଭିମାନରେ ସୁନା ମୁହଁ ବୁଲାଇଲା । ବାପ୍ପାର ହାତ ଖସି ପଡ଼ିଲା । ସୁନା ବାପ୍ପା ପାଖରୁ ଘୁଞ୍ଚି ବସି ଓଠ ଅରାଇ କହିଲା, ତୁ ବଡ଼ ଦୁଷ୍ଟ । ମତେ କଣ ଧାଙ୍ଗଡ଼ୀ କଲୁ କି ଯେ ମୋ ମୁହଁରେ ହାତ ଦେଉଛୁ ?

ନିଜର ଭୁଲ ବୁଝିପାରି ବାପ୍ପା ଲାଜରା ହେଲା । ସେ କଅଣ କହିବାକୁ ବସିଥିଲା କହିପାରିଲା ନାହିଁ । ଗୁପ୍ତ ତଳର ଛଟିଲା ବ୍ୟଥା ତା'ର ସୁନ୍ଦର ମୁହଁରେ ପ୍ରତିଫଳିଲା । ସେ ସୁନାର ହାତ ଧରିଲା । ଥରିଲା ଓଠରେ କହିଲା, ମୁଁ ଗରିବ, ମୁଁ ମୂଲିଆ । ଜାନର ଝିଅର ହାତ ଧରି ଘରକୁ ଆଣି ତାକୁ ଏଇ ଭଙ୍ଗା

କୁଡ଼ିଆରେ ରହିବ ! ଦେଖ, ଏଇ ମୋ'ର ଘର । ଉପରେ ଛପର ନାହିଁ, କାନ୍ଥର ଝାଟି ଖାଲ ହେଲାଣି ।

ସୁନା ହାତ ଖସାଇ ନେଇପାରିଲା ନାହିଁ । ତା'ର ସାରା ଅଙ୍ଗରେ ତାରୁଣ୍ୟର ତଡ଼ିତ୍ ପ୍ରବାହ ଖେଳିଗଲା । ସେ ଦୂରରେ ଥିବା ବାଘୁଆର ଭଙ୍ଗା କୁଡ଼ିଆକୁ ଚାହିଁଲା ।

ବାଘୁଆ ପଚାରିଲା, ଶୁଣିବୁ ମୋ କଥା ?

ସୁନା ପଚାରିଲା ଆଖିରେ ଚାହିଁଲା ।

ତା ଦୃଷ୍ଟିରୁ ବାଘୁଆ ସଙ୍କେତ ପାଇଲା, ସେ ଶୁଣିବାକୁ ଚାହେଁ, ଜାଣିବାକୁ ଚାହେଁ । କହିଲା, ମୋର ଏଇ ଏକୁଟିଆ ଦରଭଙ୍ଗା କୁଡ଼ିଆ ଭିତରେ ମୁଁ ରହେ । ବର୍ଷା ଆସେ, କୁଡ଼ିଆ ଭିତରେ ପାଣି ପଶେ । ଢିଁକୁଳି ଖାଇ ଗେଡ଼୍ଡ଼ାରେ ବହିଯାଏ ପାଣି । ତା'ଉପରେ ସେ ଯେଉଁ ପଥର ଟୋଲ, ସେଇଠି ଦିନରାତି ଲୁଚି ବସେ । କେବେ କେମିତି ପଡ଼ାକୁ ବାହାରି ଚନ୍ଦ୍ରବୁଢ଼ି ଡୋଙ୍ଗର କଡ଼ରୁ କନ୍ଦା ଖୋଳି ଖାଏ । କେତେ ଦିନ କେତେ ରାତି କଟିଯାଏ । ପେଟରେ ପେଜ ପଡ଼େ ନାହିଁ । ଜଙ୍ଗଲର କନ୍ଦା, ଝୋଲର ପାଣିରେ ଜୀବନ ରଖେ ।

ସେ ତୁନି ହେଲା ।

ତୁନି ହେଲୁ ଯେ ? କହ ବାଘୁଆ, ତୋ କଥା ମୁଁ ଶୁଣିବି ।

ଶୀତ ଆସେ । ଏଇ କୁଡ଼ିଆର ଚଟାଣ ଉପରେ ପତର ପାରି ଶୁଏ । କାନି ଘୋଡ଼ିହୁଏ । ମୁଣ୍ଡ ଉପରେ ନିଆଁ ଜାଳେ । ପାହାଡ଼ ଉପରୁ ବୋବାଳି ଛୁଟେ ବାଘ । ଭୟରେ ଥରଉଠି ବସେ । ଧନୁଶର ଧରେ । ତାଟି କବାଟ ବନ୍ଦ କରି ବସିରହେ । ବାଘ ଓହ୍ଲାଏ । ଗେଡ଼୍ଡ଼ାରୁ ପିଏ ପାଣି । ଏଇ ଚଟାଣ ଉପରେ ବସେ । ବର୍ଷାଦିନର ଘଡ଼ଘଡ଼ି ପରି ସେ ଗର୍ଜନ କରେ । ପାହାଡ଼ ଜଙ୍ଗଲ ଥରି ଉଠେ । ସତେ କି ପର୍ବତ ଝଁଜାଡ଼ି ହୋଇପଡ଼ିବ । ଧନୁରେ ଶର ଲଗାଏ । କାନଯାଏ ଟାଣେ । ମନେକରେ ଛୁଡ଼ିଦେବି । ସୁନା, କେବେକାର କଥା ମୋର

ମନେପଡ଼େ । ପିଲାଟେ ହୋଇଥିଲି । ଜହ୍ନ-ରାତି । ଏମିତି ବାଘ ବୋବେଇଥିଲା । ବାପା ଧନୁଶର ଓ ଟାଙ୍ଗି ଧରି ପଦାକୁ ଆସିଲେ । ପଥର ପଛରେ ଛପି ମାରିଦେଲେ କାଣ୍ଡ । ବାଘ ମାଡ଼ ଖାଇ ଚମକି ଆସି ବାପଙ୍କୁ ଧରିଲା । ବାପ ଟାଙ୍ଗି ଚୋଟ ମାରିଲେ । ମୁଣ୍ଡରେ । ବାପ ମଲେ । ବାଘ ବି ମଲା । ସୁନା ଲୋ, ମୁଁ କାଣ୍ଡକୁ ଧନୁରୁ ଖସାଏ । ଭାବେଁ, କାଳେ ମୋ'ର ବାପର ଆତ୍ମା ବାଘ ହୋଇ ମତେ ଦେଖିବାକୁ ଆଇଥିବ । ବାଘ ଚାଲିଯାଏ । ମୁଁ ପଦାକୁ ବାହାରେ—।

ବାପ୍ପା ଦୀର୍ଘଶ୍ୱାସ ଛାଡ଼ିଲା । ତୁନି ହେଲା ।

ସୁନା ବାପ୍ପା କଡ଼କୁ ଧୀରେ ଧୀରେ ଘୁଞ୍ଚିଆସି ତାର କାନ୍ଧରେ ହାତ ପକାଇ କହିଲା, ତୁନି ରହିଲୁ କାହିଁକି ? କହ, ଆହୁରି କହ ।

କଅଣ କହିବ ଗୋ ଜାମାର ଝିଅ ? ମୋର ଦୁଃଖ ତୁ କାହିଁକି ଶୁଣିବୁ ? ଖରାଦିନେ—ଏଇ କୁଣ୍ଡିଆ ଗଛ ଯେଉଁଠି ମୂଳ ଗାତ ଫୁଟାଏ, ସେଇ ଗାତ ଭିତରୁ ସରୁ ସରୁ ମୁହଁ କାଢ଼ି, ଜଳଜଳ ଜଳଜଳ ଆଖିରେ ସାପମାନେ ଚାହାନ୍ତି । ଦିନେ, ଏଇ ସାପରୁ ଗୋଟାଏ ମୋ ମାଆକୁ କାମୁଡ଼ିଲା । ମାଆ ମଲା । ଡର କରି ମୁଁ ପଦାକୁ ଆସେ । କେତେ ଦୁଃଖ ମୋର । କଅଣ ତତେ କହିବ ସୁନା ? ବଣର ଜନ୍ତୁ, ଜଙ୍ଗଲର କନ୍ଦା, ଫଳମୂଳ, କାଇ, ଉଇଟାଙ୍କୁ, ବେଙ୍ଗ, ଏଇଆ ମୁଁ ଖାଏଁ । କେବେ କପଡ଼ ପେଜ ଖାଏ ।

ସୁଖରେ ଥାଉଚୁ ତ ବାପ୍ପା !

ସୁଖରେ ନୁହେଁ ଆଉ କ'ଣ ସେଥିଲାଗି ତତେ କହୁଛି ସୁନା, ଜାମାର ଝିଅ ! ତୁ, ପିଲାଦିନୁ ସୁଖରେ ବଢ଼ିଛୁ । ଦୁଃଖ କଷ୍ଟ ଜାଣିନୁ । ମାଗତାକୁ ତୁ ବାହା ହ । ଖୁସିରେ ରହିବୁ । ଦେଖ, ନୋକା ନାଇକର ବଡ଼ଘର, ଜମିବାଡ଼ି । କେତେ ଗାଈ ଗୋରୁ, ଧୁଡ଼, ଖମାର । ସବୁ ତୋର ହେବ ସୁନା, ସବୁ ତୋର ହେବ । ତୁ ଭଲରେ ରହିବୁ । ନାଇକ ମତେ ଖମାର ରଖିବାକୁ ଖବର ପଠେଇଥିଲା । ମାଗତା ବି କହିଲା, ମୁଁ ମଙ୍ଗିଲି ନାହିଁ । ଆରେ ସୁନା, ତୁ ଯା ମାଗତା ଘରକୁ । ମୁଁ ଯିବି, ତୋର ଖମାରି ହେବି । ତୋର କାମ କରିବି । ତୋର ଭଲପାଇଁ

ଙ୍ଗବନ ଦେବ ସୁନା, ଙ୍ଗବନ ଦେବ । ତୋ ହାତର ପେଜ୍ ଖାଇବ ସୁନା ପେଜ୍ ଖାଇବ । ଦେଉ ନାହିଁ କ ?

ବାସୁର ଆଖି ଛଲ ଛଲ ହୋଇ ଆସିଲା ।

ସୁନା ସହିପାରିଲା ନାହିଁ । ଦୁଇ ହାତ ବାସୁ୍ଆରେ ବେକରେ ଛନ୍ଦି ତା ହାତ ଉପରକୁ ଆଉଜି ପଡ଼ିଲା । ଆଖି ଓଦା ହୋଇ । କହିଲା, ପେଜ୍ ଦେବ ବାସୁ ! ମାଗତାର ଘରେ ନୁହେଁ ତୋର ଏଇ ଖଣ୍ଡିଏ, ଭଙ୍ଗାଘରେ । ନିଜେ ରାନ୍ଧିବ, ଆଉ ଆଗ ଦେବ । ଯାହା ବଳିବ, ମୁଁ ଖାଇବି ।

ବାସୁ ଘୁଞ୍ଚି ଆସିଲା । ସୁନାର ଦୁଇହାତ ତଳେ ଖସିପଡ଼ିଲା । ତା ମୁହଁକୁ ଚାହିଁ ସେ କହିଲା, ନାଇଁ, ନାଇଁ ସୁନା, ତୁ ଚାଲିଯା ମୋ ପାଖରୁ । ଗରିବ, କାଙ୍ଗାଳ, କୁଳଟା ମୁଁ । ମୋ ହାତରେ ତୁ କଷ୍ଟ ପାଇବୁ କାହିଁକି ? ମାଗତା ଘରେ ଘରଣୀ ହେବୁ । ଏଇ ପିଠିରେ ନାଉ କରି, ଏଇ କୋଳରେ ଝୁଲାଇ, ତୋ ପିଲାଙ୍କୁ ମୁଁ ମଣିଷ କରିବି । ବଞ୍ଚିଥିବା ଯାଏ ତୋ ପାଖେ ପାଖେ ଥିବି ସୁନା !

ରାଗ ତମ ତମ ହୋଇ ପଥର ଚଟାଣ ଉପରୁ ସୁନା ଉଠିଆସିଲା । ଟଳେ ଠିଆହୋଇ କଟମଟ କରି ବାସୁର ମୁହଁକୁ ଚାହିଁ କହିଲା, ମାଗତାର ମାଇପ ହୋଇ ଖୁସିରେ ରହିଲେ ମତେ ଖମ୍ବାରି ଚେଢିବାକୁ ଲୋକ ମିଳିବେ । ବାଘ୍ୟାଙ୍କୁ ଖମ୍ବାରି ନ ରଖିଲେ କାମ ଅଚଳ ହେବ ନାହିଁ ।

ଅଭିମାନ କରି ଚାଲି ଯାଉଥିଲା ସୁନା । ବାସୁ ଉଠିଲା । ଅଧା ଗୁନ୍ଥା ଫୁଲମାଳ ଧରି ତାର ପଛେ ପଛେ ଯାଇ ସୁନାର ହାତ ଧରି ଅଟକାଇ ରଖିଲା ।

ଛାଡ଼୍ ମୋ'ର ହାତ ବାସୁ । ସୁନା ହାତ ଛୁଆଡ଼ି କହିଲା, ତୁ ଅନାଥ, ଗରିବ, ମୂଲିଆ । ତୋର ଘର ନାହିଁ, ଭୂମିବାଡ଼ି ନାହିଁ । ତୋର ଗାଈ କି ପୁଡ଼ି ନାହିଁ । ଏସବୁ ସତ କଥା । ହେଲେ, ତୋର ତୁ ନିଜେ ଅଛୁ । ତୋର ଶକ୍ତି ଅଛି, ଭଲପଣ ଅଛି । ସାହସ ଅଛି । ଯାହା ତୋର ନାହିଁ ସେତିକ କରିପାରିବୁ ତ ?

ବାଘୁଆ ବମାଡ ଧ୍ୱୋଇ କହ୍ୱିଲା, ଘଗିଲୁ କି ସୁନା ?

ସୁନା ବୁଲିପଡ଼ି କହ୍ୱିଲା, ରଖିବ କାହିଁକି ? ତୁ ଯଦ ବଣର ପିଲା, ମତେ ଯଦ ବାହାଙ୍ଗୋଇ ଘରକୁ ଅଣିବାକୁ ତୋର ଧାହସ ନାହିଁ; ମୋ ହାତ ଧରି ଅଟକାଇ ରଖ ନା । ଆଜଠୁଁ ତୋର ମୋର ଛୁଡ଼ିଗଲା । ତୁ ଆଉ ମତେ କଥା କହିବୁ ନାହିଁ ।

ସୁନା—

ଯାହା କହ୍ୱିଲ ସତ କଥା ।

ତୋର ଭଲ ପାଇଁ ମୁଁ କହୁଥିଲି ।

ମୋ'ର ଭଲ ? ହଇରେ, ପାଣି, ପବନ, ବାଘ, ସାପ, ଉପାସ, ଶ୍ୱେକ, ଏଇ କଥା କହ ମୋତେ ଡ଼ରଇବୁ ? ପାଖରୁ ଛଡ଼ିଦେବୁ ? ବାପ ମୋର ଲାଙ୍କ ହେଲା, ଜାକର ଠାକୁରାଣୀ ପୂଜିଲା ବୋଲି କଣ ମୁଁ କନ୍ଦସର ଝିଅ ନୁହେଁ କି ? ବଣ, ଜଙ୍ଗଲ, ଡୋଙ୍ଗର, ବାଘ ଓ ପେଟକୁ ମୁଁ ଡ଼ରିବ ? ଚ୍ହିଁ ଦେଖିଲୁ ଚାରିଆଡ଼କୁ କେତେ ପାହାଡ଼, ଡ଼ୋଙ୍ଗର, ଝୋଲା । କେତେ ଗଛ । ଆମର ରହିବାକୁ ଥାନ ମିଳିବ ନାହିଁ ? ଦୁଇଟା ପେଟ ପୋଷିବାକୁ ଫଳମୂଳ, ଜବକନ୍ଦୁ ପାଇବା ନାହିଁ ? ଘର କରି ପଲା ବାନ୍ଧ ରହିବାକୁ ଡାଳ ପତର ଯୋଗାଡ଼ ହେବ ନାହିଁ ? ଲୁଗା ନ ମିଳିଲେ ପତରମାଳ ଅଣ୍ଟାରେ ବାନ୍ଧିବା । ତେଲ ହଳଦୀ ନ ମିଳିଲେ ବଣର ରଙ୍ଗିଲା ମାଟି ଦେହରେ ବୋଳିବା । ଫଳମୂଳ, ଧାନ କାନ୍ଦୁଲ ନ ମିଳିଲେ ତେନ୍ତୁଳି ମଞ୍ଜି ଚୁରି ଖାଇବା । ଆଉ ଲୋଡ଼ା କଣରେ—?

ପାରିବୁ ସୁନା ? କୃତଜ୍ଞତାରେ ଆଖି ଛଳ ଛଳ କରି ମାଘୁଆ ପଚ୍ଚରିଲା

ପ୍ରେମ-ପାଗଳିନୀ ସୁନା ତାର ମନର ମଣିଷ ବାଘୁଆକୁ ଆଶାଭରା ଅଖିରେ ଚାହିଁଲା । କି ସୁନ୍ଦର ରୂପ, କେଡ଼େ ଚମତ୍କାର ସ୍ୱାସ୍ଥ୍ୟ । ସବୁ ପୁଅ ଓ ଝିଅଙ୍କ ପାଇଁ ହସି ହସିକା ସବୁ କାମ କରେ; କିନ୍ତୁ ନିଜର ଅବସ୍ଥା ବୁଝି ସେ ଦୂରେଇ ରହେ । ସମସ୍ତଙ୍କ ପାଖରୁ କଡ଼େଇଯାଏ । ହାତ ଧରି ଅରଣ୍ୟର ନିର୍ବୋ ଥାନକୁ ନେବାକୁ

ମନକଲା ହିଁଅ ହତାଶ ହୁଅନ୍ତି । କେତେ ଆଉ ଦେଖାଇ ହସି ହସିକା କରଛଡ଼ ଦେଇ ଚାଲିଯାଏ ସିନା, ପୁନାର ମନ ତ ଗୋଡ଼ାଏ ତା' ପଛରେ ।

ପୁନା କହିଲା, ପାରିବ । ସେହି ଜଙ୍ଗଲର ସେପାରି' ନୀଳଗିରି ପର୍ବତ ଉପରେ ଯେଉଁ କନ୍ଧ ପିଲା ଘର କରିଛନ୍ତି, ସେମାନେ କେମିତି ଅଛନ୍ତି ? ଆମେ ପାହାଡ଼ରେ ନିଆଁ ଲଗାଇବା । ତୋର ମୋର ମିଶି ପୋଡ଼ ଚାଷ କରିବା । ଭଲହେବ ବାପ୍ପା । ତୁ ଆଗରେ ଚାଲିଲେ ମୁଁ ତୋ ପଛରେ ଚାଲିବି, ତୁ ହଟିଗଲେ ମୁଁ ଆଗକୁ ଯାଇ ତୋ ହାତ ଧରିବି । ଚାଲିଥିବା । ଆମର ଘର କେତେ ବଡ଼, ଆମର ରାଜ୍ୟ କେତେ ବଡ଼ । ଦେଖ ଚାରିଆଡ଼କୁ । ଓଃ, ଆଖି ପାଉ ନାହିଁ !

ପାରିବୁ ପୁନା ?

ପାରିବ । ଆମର ଛୋଟ ଗାଁର ଛୋଟ ଘର ଭିତରେ ବାନ୍ଧିହୋଇ ରହିବାକୁ ଭଲ ଲାଗୁ ନାହିଁ ।

ଫୁଲମାଲକୁ ପୁନାର ଖୋପାରେ ଗୁଡ଼ାଇ ବାପ୍ପା କହିଲା, ଯିବା ତୋଙ୍ଗର ସେପାରି ନୀଳଗିରି ପାହାଡ଼କୁ ? ଯିବା,—ଓଃ, ବହୁତ ଦୂର—ଯେଉଁଠି ଚାରିଆଡ଼େ ପାହାଡ଼ ଥିବ, ମଝିରେ ଅଗନାଗି ବନାନ୍ତ, କୁଆ କୋଇଲିର ରବ ନାହିଁ, ସୂର୍ଯ୍ୟର ମୁହଁ ଦିଶିବ ନାହିଁ । ମଣିଷର ପାଦ ପଡ଼ୁ ନ ଥିବ । ଝରଣାର କୂଳରେ ଆମେ ତୋଳିବା ଆମର ପତରକୁଡ଼ିଆ, ସେଇଠି ରହିବା, ଯିବା ପୁନା ?

ଯିବାରେ ବାପ୍ପା !

ଫେରିବା ନାହିଁ ?

ଫେରିବା ନାହିଁ ।

କେବେ ?

ଆଜି ।

ଅଜି ?

ମହୁଲ ଗଛ କଡ଼ରେ ଅଟକିଗଲା । ତା ପାଖରେ ବୁଦାବୁଦିକା ଜଙ୍ଗଲ । ତା'ର ଭିତରୁ ହସିହସିକା ବାହାର ଆସିଲା ହଁଆଲ ବୁଢ଼ି ଡମ୍ବ । କହିଲା, ନା ଆଜି ନୁହେଁ । ଆଉଦିନେ ଯିବ । ଅପେକ୍ଷା କର ।

ସୁନା ଓ ବାସ୍ଥା ଚମକି ଉଠିଲେ । ପରସ୍ପର ପାଖରୁ ପୃଷ୍ଠ ଠିଆହୋଇ ନିଃସହାୟ ଆଖିରେ ବୁଢ଼ିଙ୍କୁ ଚାହିଁଲେ ।

ବୁଢ଼ି ହସିଲା ମୁହଁରେ କହିଲା, ତମ ଦୁହିଁଙ୍କୁ ଖୋଜି ଖୋଜି ଆସୁଥିଲି । ଏଇଠି ଦେଖିଲି । ତମ କଥା ମୁଁ ଲୁଚି ଲୁଚି ସବୁ ଶୁଣିଛି । ଅରେ ବାସ୍ଥା, ନାଇକ ଆଉ ଜାନି ସ୍ଥିର କଲେ ଯେ, ସୁନାର ବାହାଘର ମାଗତା ହଙ୍ଗେ ହେବ । ଦଶାର ଦିନ ଠିକ୍ କରିବ, ମୁଁ ସେଠି ଥିଲି । ଛି, ମାଗତାଟା କଅଣ ମଣିଷ ? ସୁନାର ହାତ ଧରିବାକୁ ସେ ଯୋଗ୍ୟ କି ? ସୁନା ନାହିଁ ଏକା ରୁଇଁରେ ବାସ୍ଥା, ରୁଇ ସୁନାକୁ ବାହାହେବୁ ।

ଆଗ୍ରହରେ ଦୁହିଁଙ୍କ ମୁହଁ ପ୍ରଫୁଲ୍ଲ ଦିଶିଲା ।

ବୁଢ଼ି ବାରିକ ସେମାନଙ୍କୁ ବୁଝାଇ କହିଲା, ବାପ ଭାଇର ଗାଁ ଛାଡ଼ି ନିମଗିରି ପାହାଡ଼କୁ ଯିବ କାହିଁକି ? ଜାଣୁନାହିଁ କି ବାହାଘର ନ ହେଲେ ଜାକର ଠାକୁରାଣୀ ମଦ ପାଣି ପାଇବ ନାହିଁ, କୁକୁଡ଼ା ଗୋରୁ ଖାଇବ ନାହିଁ । ତୁମ ପୂର୍ବପୁରୁଷର ଡୁମାମାନେ ଖୁସି ହେବେ ନାହିଁ । ଏଇ ଗାଁର ପାହାଡ଼ ଖୋଲରେ, ଗଛବୃକ୍ଷ ପଥର ସନ୍ଧରେ କେତେ ରୂପରେ ସେମାନେ ନିତି ବୁଲୁଛନ୍ତି । ତାଙ୍କୁ ଛାଡ଼ି ତୁମେ ଲୁକି ଲୁକି ଯାଇପାରିବ ନାହିଁ । ମଣିଷ ସିନା ଦେଖିବ ନାହିଁ, ସେମାନେ ଦେଖିବେ । ତମ ପଛରେ ଗୋଡ଼ାଇ ଯିବେ । ବଣ ଜଙ୍ଗଲ ମଝିରେ ବାଘ ଭାଲୁ କି ସାପ ରୂପରେ ବାହାରି ପଡ଼ିବେ । ନୋହିଲେ, ରୋଗ ବଇରାଗ ତମ ଉପରେ ଛାଡ଼ି ଦେବେ । ବେଶୀ ଦୂର ଯାଇପାରିବ ନାହିଁ । ଜାକର ଠାକୁରାଣୀ ତୁମକୁ ଖାଇଦେବ ।

ଭୟରେ ଆକୁଳ ଆଖିରେ ସୁନା ଓ ବାସ୍ଥା ଚାରିଆଡ଼କୁ ଚାହିଁଲେ ସତେ କି ପୂର୍ବପୁରୁଷର ଆତ୍ମା ପ୍ରତି ପଥର, ଗଛ ଓ ଗେଡ଼ିଆର ପାଣି ଭିତରୁ ବାହାରି

ପଡ଼ୁଛନ୍ତି । ସତେ ତ ପାଖ ପାହାଡ଼ ଭିତରୁ ଜାକର ଠାକୁରାଣୀ କେତେ ରୂପରେ ଗୋଡ଼ାଇ ଆସୁଛି !

ବାପ୍ପା ଅଣ୍ଟିଲା ଓଠରେ ପଚାରିଲା, ତେବେ କଅଣ କରିବା ବୁଢ଼ିଆ ?

ସୁନାକୁ ତୁ ବାହା ହେବୁ । ତୋର ଏଇ ଅରମା ଢ଼ିଅରେ ଭଲ ଘର ତୋଳା ହେବ । ସେଇଠି ତୁମେ ସୁଖରେ ରହିବ । ତେଙ୍କର ଉପରେ ଗୃହ କରିବୁ । ଧୀରେ ଧୀରେ ଜଙ୍ଗଲ କାଟି ଭୂମି କରିବୁ । ପୁଡ଼ ରଖିବୁ । ଦେହରେ ତୋ'ର ତାକତ ଅଛି । ସବୁ ହେବ, ସବୁ ସୁବିଧା ତତେ ଜାକ କରିଦେବ । ଚାଲ ତୁ ସୁନାକୁ ବାହା ହୋଇପଡ଼ ।

ଜାକ ମାଗତା ବଟସ୍ବରେ କଥା ଦେଲାଣି ।

ବୁଢ଼ିଆ କହିଲା, ହେଉ । ବାହାଘର ଡେରି ଅଛି । ଏ ଭିତରେ ତୁ ସୁନାକୁ ଘିଚିନେଇ ଡୋଙ୍ଗରକୁ ଯା । ଡୋଙ୍ଗର ସେପାଖ ଜଙ୍ଗଲ ଭିତରେ ଝୋଲ କୂଳରେ ଯେଉଁ ଭଙ୍ଗା ଘର ପଡ଼ିଛି, ସେଇଠି ଦୁଇ ଚାରି ଦିନ ରହ । ଆଲେ ସୁନା, ତୋ'ର ଚଙ୍କ ତ ?

ଲାଜରେ ସୁନାର ମୁହଁ ରଙ୍ଗ ହେଲା । ତଳକୁ ମୁଣ୍ଡ ପୋତି ସମ୍ମତିସୂଚକ ମୁଣ୍ଡ ହଲାଇଲା ।

ବୁଢ଼ି କହିଲା, ବେଶ୍ । ଗାଁ ଝିଅଙ୍କ ସଙ୍ଗେ ଯେତେବେଳେ ସୁନା ପାଣି ପାଇଁ ଗେଡ଼ିଆକୁ ଆସିବ, ସେଇକବେଳେ—ଏଁ ?

ବାପ୍ପା ପଚାରିଲା, ଦିନଦିନ ପରେ, ଯେତେବେଳେ ଜାକ ଆସି ଝୋଲା (ଯୌତୁକ) ଟଙ୍କା ମାଗିବ, ଯେତେବେଳେ ଗାଁ ଲୋକେ ଖାଇବାକୁ ମଦପାଣି, ଗୋରୁ, କୁକୁଡ଼ା, ଟଙ୍କା ମାଗିବେ, ମୁଁ କୋଉଠୁ ଆଣି ଦେବି ?

ଆରେ, ଏଥିପାଇଁ ଡରୁଛୁ ? ଟଙ୍କା ମିଳିବ ନାହିଁ ? ସବୁ ମିଳିବ । ଚାଲ, ସେଇ ଗଛମୂଳକୁ । ସେଇଠି ସବୁ କଥା କହିବି ।

ବୁଢ଼ିଆ ବାଘୁଆର ହାତ ଧରିଲା । ବାଘୁଆ ସୁନାକୁ ଚାହିଁଲା ।

ବୁଢ଼ି ହସି ହସି କହିଲା, ତୁ ଯା ନା, ସନ୍ଧ ହୋଇଆସୁଛି । ବାଘୁଆକୁ ମୁଁ ସବୁ ବତାଇଦବି । ହଁ, ଦେଖ, ଯେଉଁଦିନ ସେ ତୋ'ର ହାତ ଧରିବ—କଥା ଅଧା ରହିଗଲା ।

ସୁନା ଗୋଟିଏ ବାଟରେ ଓ ବୁଢ଼ି ଏବଂ ବାଘୁଆ ଆର ବାଟରେ ଗଲେ । ସୁନା ଭାବିଲା ବୁଢ଼ିଆ ବାଉକ ଭଲ ମଣିଷ । ଝନୋଟି ଗାଆଁର ବାଉକ । ସମସ୍ତଙ୍କ ମନ କଥା ଜାଣି କାମ କରେ । ବୁଢ଼ି ବତାଏ । ବାଘୁଆ ନିଶ୍ଚୟ ତା କଥା ମାନିବ ଓ ତାକୁ ଟାଣି ନେବ । ବାଘୁଆ ହେବ ତାର ବର ।

ମନ ଖୁସିରେ ସୁନାର ପାଦ ବାଟ ଅବାଟ ମାନିଲା ନାହିଁ । ଗୁଣୁ ଗୁଣୁ ହୋଇ ଗୀତ ବୋଲିଲା ।

କ ନାମ ଗାଁର ଉପକଣ୍ଠ । ପାହାଡ଼ କଡ଼ ଜଙ୍ଗଲ ମଝିରେ ବଙ୍କେଇ ବଙ୍କେଇ ବାଟ ପଡ଼ିଛି । ଚଉଦ ପନ୍ଦର ବର୍ଷର କନ୍ଧ ଝିଅଟିଏ ମୁଣ୍ଡରେ ଶୁଖିଲା କାଠ ବୋଝ ଧରି ଯାଉଛି । ଘୋଟ ମୁଣ୍ଡିଆ କଡ଼ରେ ରାସ୍ତା ବଙ୍କେଇ ଗାଁ ଆଡ଼କୁ ଯାଇଛି । ଠିକ୍ ସେହି ଜାଗାରୁ ଆଉ ଗୋଟିଏ ବାଟ ଝୋଲର କଡ଼େ କଡ଼େ ପଡ଼ିଛି ପୁଗି ଗାଁ ଆଡ଼େ । ବାଙ୍କୁଲ ବାଟର କଡ଼ରେ ଗଛମୂଳରେ ବସିଛି ମାଗତା । ମଦ ନିଶାରେ ଆଖି ରଙ୍ଗିନି । ଗୋଟିଏ ହାତରେ ନାଉରୁମ୍ବା । ଆର ହାତରେ ଟାଙ୍ଗି । ବେଳ ଦିପହର ଖରାଦିନର ଝୋଲମରା ତାତି ।

କନ୍ଧ ଝିଅକୁ ଦେଖି ମାଗତା ଠିଆହୋଇ ଡାକିଲା, ହେ ପୁଲକ, ପୁଲକ—

ପୁଲକ ଠିଆହେଲା । କଳା ମିଚ ମିଚ ବଳିଷ୍ଠ ଝିଅ ସେ । ଗୋଲ ମୁହଁରେ ଜଡ଼ାତେଲର ପରଶ । ଚକ୍ ଚକ୍ ଦିଶୁଛି । ଆଖି ଦୁଇ ଆଡ଼କୁ ଭୁମି ଯାଉଛି । ଦୃଢ଼ ସ୍ୱରରେ ସେ ପଚାରିଲା, କଣରେ ?

ଶୁଣ୍ ।

କହ ଜଲ୍ଦି । ବେଳା ହୋଇଯାଉଛି, ଯିବି ।

ପିଇବୁ କଲେ ?

ଭୁଆଡ଼େରେ ମାଗତା—?

ହେ ଯେଉଁ ଡୋଙ୍ଗର ଦିଶୁଛି, ହେ—

କାହିଁକି ?

ଏଇଁ, କାହିଁକି ? ତତେ ନେଇ ପଳେଇବି । ତୁଇ ମୋର ଧାଙ୍ଗଡ଼ୀ ହେବୁ । ପୁନାଟା ଭଲ ନୁହେଁ । ସେ ମୋର କନିଆଁ ହେବ ନାହିଁ । ତୁଇ ହବୁ ଚାଲ—

ପୁଲକର ହାତ ଧରିବାକୁ ଆଗେଇ ଆସିଲା । ଭୟ ଓ ବିସ୍ମୟରେ ପୁଲକ ପଛେଇ ଗଲା । ରାଗିଯାଇ କହିଲା, ଦୂରେଇ ଠିଆ ହ', ହେ ମାଗତା ! ବେଶୀଗୁଡ଼ାଏ ମଦ ପିଇଛୁ । ହଠ୍, ବାଟ ଛାଡ଼ କହୁଛି—

ଅସ୍ଥିର ପାଦରେ ଆଗକୁ ଦୁଇ ପାଦ ଆସି ମାଗତା ନାଉରୁମ୍ବା ଟେକି କହିଲା, ପିଇବୁ ପୁଲକ, ପିଇବୁ ?

ମଦ ନିଶାରେ ମାଗତାର ହିତାହିତ ଜ୍ଞାନ ହଜିଛି । ସଳଖ ହୋଇ ସେ ଠିଆହୋଇପାରୁ ନାହିଁ । ଟଳ ଟଳ ହେଉଛି । ଆଖି ଦୁଇଟାରେ ରଙ୍ଗ ଚଢ଼ିଛି । ତା କଥା ଶୁଣି ପୁଲକ କହିଲା, ମୁଁ ପିଏ ନାହିଁ । ହଠିଲୁ ତୁ ବାଟରୁ—

ଚାଲ, ହେ ଡ଼ୋଙ୍ଗର ଉପରକୁ ପଳେଇବା । ମୋ'ର କନିଆଁ ହେବୁ । ମୁଁ ତତେ ବାହାହେବି ପୁଲକ ! ତୋ' ବାପକୁ ଝୋଲ ଟଙ୍କା ଦେବି । ଲୁଗା ଦେବି । ମଦ ଦେବି । ଯେତେ କହିବ । ଗାଁ ଲୋକଙ୍କୁ ଗାଈ ଦେବି, ଘୁଷୁରି ଦେବି, କୁକୁଡ଼ା ଦେବି । ଚାଲ୍, ପଳାଇବା ଚାଲ—

ଆରେ ମାଗତା, ତୋ ବଂଶ ମିଲିକା । ମୋ ବଂଶ ମିଲିକା । ତୁ ମୋର ବଂଶର ଭାଇ ହେବୁରେ, ମୁଁ ତୋର ଭଉଣୀ ହେବି । ମୁଁ କେମିତି ତୋ'ର କନିଆଁ ହେବି ? ତୁ କେମିତି ମତେ ଧାଙ୍ଗଡ଼ୀ କରିବୁ ? ପାଗଳ ହେଲୁ କି ? ବାଟ ଛାଡ଼, ମୁଁ ଯାଏ ।

ତୋ'ର ମାଆକୁ କୋଡ଼ିଏ ଟଙ୍କା ତୋରମାନା ଦେବ । ଗାଁ ଲୋକଙ୍କୁ ଦେବ । ନାଇକର ପୁଅ ମୁଁ । ଟଙ୍କା ନାହିଁ କି ?

ତୋ'ର ଟଙ୍କା ତୋ ଘରେ ରଖିଥା । ତୁ ମୋର ବଂଅଶ ଖାଇଟା । ତୋ ସାଥିରେ ମୁଁ ଯିବି ନାହିଁ । ସୁନାକୁ ଘିଚି ନେଇଯାଉନୁ ?

ସୁନା, ସୁନା ? ସେ ଭଲ ନୁହେଁ । ସେ ଯିବ ନାହିଁ । ତାକୁ ଟାଙ୍ଗିରେ ହାଣିଦେବି । ବାଘୁଆକୁ ହାଣିବ । ସୁନା ଯିବ ନାହିଁ । ବାପ୍ପା ସାଥିରେ ଯିବ । ବୁଢ଼ିଆ ଡ଼ୁମ୍ବ କହୁଥିଲ । ବାପ୍ପା ତାକୁ ଘିଚିନେବ ।

ତେବେ, ହେ ମାଗତା, ଲତା ସାଥିରେ ତୁଇ ପଳା ଯା । ଲତା କହୁଥିଲା ତୁଇ ତାକୁ ନ ନେଲେ, ସେ ତତେ ଓଟାର ନେଇ ଡୋଙ୍ଗରକୁ ଚାଲିଯିବ । ହସି ହସି କହିଲା, ପୁଣି ତୁ ତାକୁ କନିଆଁ ନ କଲେ ସେ ତତେ ବର କରିବ । ତତେ ସେ ଧାଙ୍ଗଡ଼ା କରିବ । ସେ ଝୋଲା ଟଙ୍କା ତୋ ବାପ ନାଇକକୁ ଦେବ । ତୁ, ତା'ର ସାଥିରେ ଯା । ପୁଣି ହସିଲା

ମାଗତା ଗୁରିଆଡ଼କୁ ଚାହିଁ ପଚାରିଲା, ଲତା ମତେ ଘିଚି ନେବ କି ? ଏଁ, କି ତା ? ସେ ବଲେଇ ଡ଼ୁମା, ମୁଁ ମାଙ୍କଡ଼ ଡ଼ୁମା । ଲତା ମତେ ନେବ ? ଏଇ ଏଇ ଟାଙ୍ଗିରେ ତା ମୁଣ୍ଡ ହାଣି ଦେବି । ଏଇ ଟାଙ୍ଗି—

ତୁ ଯାହା କରୁଚୁ କରୁଥା । ମତେ ବାଟ ଛାଡ଼ । ହେ ମାଗତା, ମୋର ଡ଼ୁମା ବାଘଡ଼ୁମା ଜାଣିଚୁ କି ? ମୋ ହାତ ଧରି ଟାଣି ନେଲେ ମୁଁ ତତେ ଖାଇଦେବି । ହଠ—

ପୁଲକ ଆଡ଼େଇ ହୋଇ ଚାଲିଯିବାକୁ ବସିଲା । ମାଗତା ଟଳଟଳ ତା'ର ହାତ ଧରି ଟାଣି ଦେଲା । ପୁଲକର ମୁଣ୍ଡର କାଠ ବୋଝ ଖସି ପଡ଼ିଲା । ପଡ଼ୁ ପଡ଼ୁ ଅଟକି ଯାଇ ବିରକ୍ତ ହୋଇ ସେ କହିଲା, ଛାଡ଼ ମୋର ହାତ ।

ମାଗତା ତାକୁ ଟାଣି ନେଉ ନେଉ କହିଲା, ସେଇ ଡୋଙ୍ଗର ଉପରକୁ—

ଓଃ, ଛାଡ଼—ପାଟି କରିବି—

ପାଟି କର । ମୁଁ ନାଇକର ପୁଅ, ତତେ ମୁଁ ବାହା ହେବ । କନିଆଁ କରିବ । ପାଟିକର ପୁଲକ ! ତତେ ମୁଁ ଘିନ୍ନି ନେବ । ଡ଼ୋଙ୍ଗର ସେ ପାଖେ ଜଙ୍ଗଲ ଭିତରେ ଖୋଲା କୂଳରେ ଭଙ୍ଗା ଘରଟେ ଅଛି । ସେଇଠି ରହିବା । ଚାଲ ଚାଲ ।

ମାଗତା ଟାଣିବାକୁ ଲାଗିଲା । ପୁଲକ ଚିତ୍କାର କଲା ।

ପୁରି ଗାଁ ଆଡ଼୍ ଯେଉଁ ବାଟଟି ଅସିଛି ସେଇ ବାଟେ ଲତା ଆସି ପହଞ୍ଚିଲା । ମାଗତା ପୁଲକର ହାତ ଧରି ଟାଣୁଥିବାର ଦେଖି ସେ କହିଲା, ହେ ମାଗତା, ପୁଲକ ତୋର ଏକା ବଂଶର ଭଉଣୀ । ତା ଦେହରେ ହାତ ଦେବାଟା ବଡ଼ ପାପ । ବେଶୀ ମଦ ଖାଇ ଜ୍ଞାନ ହରାଇଛୁ । ପାପ ପୁଣ୍ୟ ବୁଝି ପାରୁନୁ, ମୁଁ କହୁଛି, ହେ ମାଗତା ଛାଡ଼ି ଦେ ପୁଲକର ହାତ ।

ମାଗତା କହିଲା, ମୁଁ ତାକୁ କନିଆଁ କରିବ, ତାକୁ ମୁଁ ଘିଚିନେବ । ତା' ବାପକୁ ଖୋଲା ଟଙ୍କା ଦେବ । ତୁଇ ଯା, ତୁଇ ପଳା; ହେ ଲତା, ପୁଲକ ମୋର ଧାଙ୍ଗଡ଼ୀ ହୋଇସି—।

ଲତା ଦୁହିଙ୍କର ମଝିକୁ ଆସିଲା । ମାଗତାର ହାତରୁ ପୁଲକକୁ ମୁକ୍ତ କରି କହିଲା, ଛି, ଛି, ଜାଣୁ ନାହିଁ କି, ଯାରକା ପେଙ୍ଗୁ ସାଙ୍ଗରେ ତା'ର ବାହାଘର ଠିକ୍ ହୋଇଛି । ପେଙ୍ଗୁ ତୋର ବାପ ନାଇକ ସାଙ୍ଗରେ ବେଜୁଣୀ ପାଖକୁ ଯାଉଥିଲା । ବେଜୁଣୀ (ଯାଜକ ଠାକୁରାଣୀଙ୍କ ଜାଲସି—ନପୁଂସକ) କହିଲା, ଭଲ ହେବ । ମୁଁ ଥିଲି । ଶୁଣିଛି । ପେଙ୍ଗୁ ପୁଲକର ମା'କୁ ମଦ ଦେଇ ଆସିଲାଣି । ଦଶାରି ପାଟକୁ ଯାଇଛି । ଦଶାରି ଦିନ ବାର ଠିକ୍ କଲେ ବାହାଘର ହେବ ।

ମାଗତା ଆଶ୍ଚର୍ଯ୍ୟ ହେଲା । ପୁଲକର ହାତ ଛାଡ଼ିଲା । ଟଳୁଟଳୁ ପାଖରେ ଥିବା ମହୁଲଗଛରେ ହାତ ଭରଦେଇ ଅଟକିଲା । ଜିଭ କାମୁଡ଼ି ପଚାରିଲା, ସତ୍ କି ?

ଲତା ପୁଲକକୁ ଚାଲିଯିବାକୁ ଆଖିରେ ଇଙ୍ଗିତ ଦେଲା । ପୁଲକ ଭୟରେ ମାଗତା ଆଡ଼କୁ ଚାହିଁ କାଠବୋଝ ଉଠାଇ ମୁଣ୍ଡରେ ରଖିଲା । ଥର ଥର ପାଦରେ ସେଠାରୁ ପ୍ରସ୍ଥାନ କଲା । ଲତା ମାଗତାକୁ କହିଲା, ସତ ନୁହେଁ ତ କଣ ମିଛ ?

ମାଗତା ପାଟି କଲା, ହେ ପୁଲକ, ରହ,—ରହ—

ପୁଲକ ରହିଲା ନାହିଁ, ମାଗତା ତା ପଛରେ ଯିବାକୁ ବସିଲାରୁ ଲତା ତାର ହାତ ଧରି ଅଟକାଇ ରଖିଲା । ଦୃଢ଼କଣ୍ଠରେ କହିଲା, ରହ ମାଗତା, ମୋ କଥା ଶୁଣ ।

ମାଗତା ଅଟକି ରହିଲା । ଲତା ଦେହରେ ଗୋଟା ଧାଙ୍ଗଡ଼ୀର ଶକ୍ତି । ବଳିଆର ଝିଅ, ଶ୍ୟାମଳ ବଳିଲା ପରି ଦେହ । ମୁହଁଟି ସୁନ୍ଦର । ଟେକ୍‌ଟେକ୍ । ବାଙ୍ଗର ନଣିଧ । ମୁଣ୍ଡରେ ବେତାଏ କେଶ ।

ଲତା କହିଲା, ସୁନାକୁ ତୁ ରଖିପାରିବୁ ନାହିଁ ।

ଏ ?

ମୁଁ ଦେହୁରୀକି ପଚାରିଲି । ସେ ଜାକରି ଠାକୁରାଣୀକୁ ପଚାରିଲା । କାଲି ବଢରେ ଠାକୁରାଣୀ ତାକୁ ସପନେଇଛି, ସୁନାକୁ ବାଇଆ ନେବ । ସୁନା ତା'ର ଧାଙ୍ଗଡ଼ୀ ହେବ ।

ମାଗତା ପଚାରିଲା, ସୁନାକୁ ବାଇଆ ଝିଙ୍କି ନେବ ?

କାହିଁକି ନ ନେବ ରେ ମାଗତା ? ଉପରେ ଧର୍ମ, ତଳେ ଧରଣୀ ଅଛନ୍ତି ? ମୁଁ ପିଲାଟେ ହୋଇଥିଲି । ତୋର ବାପ ମତେ ବୋହୂ କଲା । ଠାକୁରାଣୀ ସବୁ ଜାଣେ । ମତେ ଛାଡ଼ି ସୁନାକୁ ପୁଣି ବୋହୂ କରିବାକୁ ବସିଛୁ । ଜାନର (ପୁରୋହିତ ବା ପୂଜାରୀ ବା ଠାକୁରାଣୀର ସେବକ) ଝିଅ ବୋଲି ଠାକୁରାଣୀ ଛାଡ଼ିବ ନାହିଁ ରେ, ଖାଇଦେବ । ମୁଁ ତୋ'ର ଧାଙ୍ଗଡ଼ୀ । ତୁ ମୋର ଧାଙ୍ଗଡ଼ା ମାଗତା, ଚାଲ ପଳାଇବା । ନେ, ତୁଇ ମୋର ହାତଧରି ଟାଣିନେ । ଯୁଆଡ଼େ ତୁ ଯିବୁ, ମୁଁ ତୋର ପଛେ ପଛେ ଯିବି । ତୁ ମୋ'ର ଅଣ୍ଡିରା । ମାଗତା—

ଲତା ଲୁହଭରା ଆଖିରେ ଚାହିଁଲା । ମାଗତା ଆଖି ଉଙ୍କାଇ କହିଲା, ଛାଡ଼ ମୋ'ର ହାତ ।

ହାତ ଟାଣିଲା । ଲତା ତା ହାତକୁ ଅଧିକ କଟମଟ କରି ଧରିଲା ।

ଛାଡ଼, ମୋ'ର ହାତ କହୁଛୁ, ନୋହିଲେ—

ଆଉ ହାତରେ ମାଗତା ଟାଙ୍ଗି ଉଠାଇଲା ।

ମାରିବୁ ମାଗତା ? ଦେଖ୍ ଏଇ ଯେଉଁ ବଡ଼ ପଥର ତା'ରି ଭିତରେ ଟପକାଯାଉ ଠାକୁରାଣୀ ଅଛି । ସେଇ ଦେଉଳ ପାଟରେ ଗାଙ୍ଗୀ ଠାକୁରାଣୀ ବସିଛି । ତା ପାଖରେ ବରଗଛ ଭିତରେ ଅଇ ଅନେଇଛି ବୁଢ଼ୀ ଠାକୁରାଣୀ । ସମସ୍ତଙ୍କ ଉପରେ ବଡ଼ ଯେ ଜାକର ଠାକୁରାଣୀ, ସେ ଦେଖୁଛି । ମୋ'ର ବାପ କହୁଥିଲା ବେଳେ ସମସ୍ତଙ୍କୁ ସେ ମଦ ଦେଇଥିଲା, ପୂଜା ସୁଆଁରି କୁକୁଡ଼ା ଦେଇଥିଲା । କହୁଥିଲା, ମାଗତା ମୋର ଅଣ୍ଡିରା ହେବ । ତୋର ବାପ ଶୁଣିଛି । ଗାଁ ଲୋକେ ଶୁଣିଛନ୍ତି । ତୁଇ ସିନା ଭୁଲିବୁ, ତୋ'ର ବାପ ନାଇକ ବୋଲି ସିନା ମୋ'ର ବାପ ମଲାକୁ ମତେ ବୋହୂ କରିବାକୁ ଅପୁ ନାହିଁ (ମଙ୍ଗ୍ ନାହିଁ) । ଠାକୁରାଣୀମାନେ କ'ଣ ଭୁଲିବେ ? ସମସ୍ତେ ଅନେଇଛନ୍ତି । ତୁଇ ମତେ ଛାଡ଼ିଲେ, ସେମାନେ ତୋ' ବାପକୁ ଖାଇଦେବେ । ମୁଁ ତକ୍କୁ କହୁଛି । ଦେବ୍‌କୁ କହୁଛି ।

ଡରି ଡରି ମାଗତା ଚାରିଆଡ଼କୁ ଚାହିଁଲା, ସତେ କି, ଦୂର ପଥର, ଗଛ, ଖୋଲ, ପାହାଡ଼ ଭିତରୁ ଠାକୁରାଣୀମାନେ ବାହାରି ପଡ଼ୁଛନ୍ତି । ଆଉ, ତାକୁ ଗ୍ରାସ କରିବାକୁ ଆଖି ତରାଟି, ହାତ ବଢ଼ାଇ ଧାଇଁ ଆସୁଛନ୍ତି । ମାଗତା ଟାଙ୍ଗି ଟାକୁ କାନ୍ଧରେ ଝୁଲାଇ ଦେଲା । ହାତ ବଢ଼ାଇ ଲତାର ଆର ହାତ ଧରି ଥରିଲା ସ୍ୱରରେ ପଚାରିଲା, କ'ଣ କରିବା ଲତା ?

ଲତା କହିଲା, ମୋ'ର ହାତ ଧରିଛୁ, ଏଥର ମତେ ଟାଣିନେ । ସବୁ ଠାକୁରାଣୀ ଆମ ପଛରେ ଚାଲିବେ । ଯେଉଁ ଜନ୍ତୁକୁ ଟାଙ୍ଗି ଧରି ମାରିବାକୁ ମନ କରିବୁ, ସେ ମରିବ । ଯେଉଁଠି ଖୋଳିବା, ସେଠି ପାଇବା କନ୍ଦା । ଯେଉଁ

ଗଛରେ ଚଢ଼ିବୁ, ସେଠି ପାଇବୁ ମହୁ । ମାଗତାରେ, ଠାକୁରାଣୀ ଆମ ଦେଶରେ ଥିବେ । ଆମେ କେତେ ଖୁସି ଆନନ୍ଦରେ ରହିବା ।

ମାଗତା ଲତାର ହାତ ଧରି ଟାଣି ଟାଣି ନେଲା । କହିଲା ଡରି ଡରି, କୁଆଡ଼େ ନେବ ମତେ ?

ସେଣିକି ତୋ'ର ମନ । ପାହାଡ଼ ସେପାଖ—, କଥା ଅଧା ରହିଗଲା ।

ବାଟ ବାଙ୍କର ଗଛ ବୁଦାଡ଼ରୁ ବାହାରି ପଡ଼ିଲେ ନାଇକ ମିଲିକା ନୋକା ଓ ଦଶାର ବୁଢ଼ା । ବେଳ ରତ ରତ । ପାହାଡ଼ମାଳ ପଛ ଆଡ଼େ ସୂର୍ଯ୍ୟ ଛପିଲେଣି । ଲତାର ହାତରୁ ମାଗତାର ହାତ ଖସି ପଡ଼ିଲା । ଅବାକ୍ ହୋଇ ଦହେଁ ଠିଆହୋଇ ରହିଲେ, ନାଇକ ଓ ଦଶାର ପାଖକୁ ଆସିଲେ ।

ନାଇକ ଆକଟକରି ପୁଅକୁ କହିଲା, ଏ କଅଣ ମାଗତା ?

ମାଗତା ବାପକୁ ଦେଖି ଶଙ୍କିଗଲା । ଟଳଟଳ ହୋଇ ଅଡ଼େଇ ଗଲା । ଲାଜ ସଙ୍କୋଚ ଛାଡ଼ି ଲତା ଆଗେଇ ଆସି କହିଲା, ମାଗତା ମୋ'ର ହାତ ଧରି ଟାଣି ନେଇଥିଲା, କହିଲା, ସେ ମୋତେ ଘରଣୀ କରିବ ।

ଘୃଣାରେ ଲତାକୁ ଚାହିଁ ନେଇ ନାଇକ ଆଖି ଫେରାଇଲା ମାଗତା ଉପରକୁ । ତା'ର ଅବସ୍ଥା ଦେଖି ଦୁଃଖ ଓ କ୍ରୋଧରେ କ୍ଷୋଭ କଲା, ମାଗତା—

ମାଗତା ଡରି ଡରି କହିଲା, ଏହି ଲତା ମତେ କହିଲା—

କ'ଣ କହିଲୁ ? ତୁ ଜାଣୁ ନାହିଁ କି ଜାତିର ଝିଅ ସୁନା ସାଥିରେ ତୋ'ର ବାହାଘର ଠିକ୍ ହୋଇଛି ? ଦଶାର ଦିନ ଧରିଛି, ଦଶଦିନ ଅଛି ବାହାଘର । ଯାହାର ପରି ତାର ହାତ ଧରିବା ତୋ'ର ଉଚିତ ନୁହେଁ ।

ଲତାର ଆଖିରୁ ଦୁଇଧାର ଲୁହ ଝରି ପଡ଼ିଲା । ନାଇକ ଅପ୍ରସ୍ତୁତ ହୋଇଛି । ଧୈର୍ଯ୍ୟ ଧରି ଧୀରେ ଧୀରେ ସେ କହିଲା, ମୁଁ ତୋ'ର ବୋହୂ ନୁହେଁ କି ନାଇକ ? ଏଇ ଦଶାର ବୁଢ଼ା ସେଦିନ ଝାଙ୍କରୀ ଠାକୁରାଣୀ ପାଖେ, ଜାନି ଆଗରେ କହିଥିଲା ।

ଗାଁ ଲୋକେ ସମସ୍ତେ ଥିଲେ । ମୋ'ର ବାପ ମଲାରୁ ତୁମେ କଥା ଫେରାଇ ନେବ କି ? ମୋ ବାପର ଜୀବନ କାନ୍ଦି କାନ୍ଦି ବୁଲିବ । ତା'ର ସଦ୍‌ଗତି ହେବ କି ? ତା'ର ଦୁଃଖ ହୋଇ—

ନାକ ଟେକି ଘୃଣାରେ ଲତା ଆଡ଼କୁ ଚାହିଁ ନାଇକ କହିଲା, ତୁ ତୋ ବାପକୁ ଖାଇଲୁ । ପୁଣି ମୋର ବୋହୂ ହୋଇ ମତେ ଖାଇବୁ କି ? ତୋ ବାପର ଜୀବନ କାନ୍ଦି ବୁଲିବ ତ ଆମର କି ଦୋଷ ? ନାଇକ ମାଗତାକୁ ଚାହିଁ କହିଲା, ଆଉ ଥରେ ଯଦି ପୁଣି ଲତା ସଙ୍ଗେ ମିଶିବୁ ତ ଦେଖିବୁ ଏଇ ଟାଙ୍ଗିରେ ତୋ ଦେହରୁ ମୁଣ୍ଡ କାଟି ଅଲଗା କରିବି ।

ବାଘ ଶିଶୁଟି ପରି ମାଗତା ତା ବାପର ଆଗେ ଆଗେ ଚାଲିଲା । ନୋକା ଓ ଦଶାର ସେହି ବାଟରେ ଅଦୃଶ୍ୟ ହୋଇଗଲେ ।

ଲତା ମଲାଗଛ ପରି ବଡ଼ ପଥର ଆଗରେ ଠିଆହୋଇ ରହିଲା । ଆଖିରୁ ଲୁହ ଝରିଲା । ହାତ ଯୋଡ଼ି ମୁଣ୍ଡରେ ଲଗାଇ କହିଲା, ମା ଝଙ୍କର, ତୁଇ ଏକା ଜାଣୁ । ମୁଁ ତ କାହାକୁ ଖାଇ ନାହିଁ । ତୁଇ ମୋ'ର ବାପାକୁ ଖାଇଲୁ, ତୁଇ ଫେର ବେଳଣ୍ଡୀକୁ ସପନ ଦେଲୁ । ମାଗତା ପାଖକୁ ତୁହି ଏକୀ ମତେ ପଠେଇଲୁ ।

ନୋକାର ପୁଅ ମାଗତାକୁ ମୋତେ ଦେବ ବୋଲି ବାପ ମୋର କଥା ଦେଲା । ସମସ୍ତଙ୍କୁ ମଦ ପାଣି ଦେଲା । ତୁଇ ତାକୁ ବେଗମ କଲୁ । କସ୍ ଦୋଷ ସେ କଲା କି ତୋତେ ସିନା ଜଣା, ଗୋ ମା ଜାକର ଠାକୁରାଣୀ, ତାକୁ ତୁ ନେଲୁ । ମୋର କି ଦୋଷ ?

ଲତାର ଆଖିରୁ ଲୁହ ଝରିଲା । ସେ ପୁଣି କହିଲା, ବାପର ଜୀବନ ରାତି ଅଧରେ ଆସି ଘର ପଛର ମହୁଲଗଛ ତଳେ କାନ୍ଦୁଛି । ମୋତେ ସପନରେ କହୁଛି, ତୁ ନାଇକର ବୋହୂ, ମାଗତାର ଘରଣୀ ହେବୁ । ମୁଁ କଥା ଦେଇ ଆସିଛି । ମୋ'ର କି ଦୋଷ ମା ଜାକର ?

ସନ୍ଧ୍ୟା ଅନ୍ଧାର ମାଡ଼ି ଆସୁଛି । ବଣ ପାହାଡ଼ର ଦେଶ । ଆଉ ଅଧିକ ବେଳ ରହିବା ନିରାପଦ ନୁହେଁ । ଲତା ଏଥର ଭାବି ଗାମକୁ ଫେରିଲା ।

ବଡ଼ଗୁଡ଼ା ଗ୍ରାମରେ କୃମୁଟି ସାହୁକାର ଗୁରୁମୂର୍ତ୍ତିର ଘର । ବଡ଼ଘର, କୋଠା ଉପରେ ଖପର ଛପରି । ଗାଁ ରାସ୍ତା ଆଡ଼କୁ ଚଉଡ଼ା ପକ୍କା ବାରଣ୍ଡା । ଗୋଟିଏ ପାଖରେ ସତରଞ୍ଜି ପାରି କଲା ମିଶମିଶ ଅନ୍ଧାରପେଟା ଗୁରୁମୂର୍ତ୍ତି କାନ୍ଧରେ ଗୁଦର ପକାଇ ବସିଛନ୍ତି । ମୁଣ୍ଡରେ ଟେକା । ଆଗରେ ମେଲହୋଇ ପଡ଼ିଛି ଗୋଟିଏ ଲମ୍ବା ଖାତା । ଆଉ ବଡ଼ାଏ ଖାତା ଗୋଟିଏ ପାଖରେ ସଜାହୋଇ ରଖାଯାଇଛି ।

ସତରଞ୍ଜିର ଆରପାଖରେ ବସିଛନ୍ତି ପି. (ପଟ୍ଟନାୟକ) ଜଗନ୍ନାଥ । ପାଖରେ ବ୍ରିଟ ବାକ୍ସ, ଦୁଆତ କଲମ ଓ କାଗଜ । ଆଖିରେ ଚଷମା । ପିଣ୍ଡା ତଳେ କେତେଜଣ କନ୍ଧ, ଡମ୍ବ ଓ ଏନେଟି ଦୋରା ବସିଛନ୍ତି । ଉପରେ ଖରା । ବେଳ ଦ୍ୱିପ୍ରହର ।

ଗୁରୁମୂର୍ତ୍ତି କହିଲେ, ଶୁଣ ପଟ୍ଟନାୟକଲୁ ! ଯୋଗ୍ୟାକା ବିରସୁ କନ୍ଧର ହିସାବ ଦେଖି ତାକୁ ବୁଝାଇ ଦିଅ । ତାର କେତେ ବାକି ଅଛି କହ ।

ଖାତାଟିକୁ ପଟ୍ଟନାୟକଙ୍କ ପାଖକୁ ସାହୁକାର ବଢ଼ାଇ ଦେଲେ । ପଟ୍ଟନାୟକ ପତ୍ର ଓଲଟାଇ କହିଲେ, ଆରେ ବିରସୁ, ତୋ'ର ବାପା ଖୋରକ ଯେତେବେଳେ ବାହା ହେଲା, ସାହୁକାରଙ୍କଠୁଁ ତିନି କୋଡ଼ି ପନ୍ଦର ଟଙ୍କା ନେଇଥିଲା । ଦଶବରଷ ଖମ୍ବାର ରହି ଦୁଇକୋଡ଼ି ଦଶଟଙ୍କା ଶୁଝିଲା । ଜଙ୍ଗଲ ହଣା କେଶ୍‌ରେ ତାକୁ କୋଟ ଘର କୋଡ଼ିଏ ଦଶ ଟଙ୍କା ଜୋରିମାନା କଲେ । ତା'କୁ ମଧ୍ୟ ସାହୁକାର ଦେଲା, ବାକି ରହିଲା ଦୁଇ କୋଡ଼ି ପନ୍ଦର । କୋଡ଼ିଏ ଦଶ ଟଙ୍କା ବାବତକୁ ବରଗଛ ଭୂମି ବନ୍ଧା ଦେଲା । ପଦୁ ଲେଖିଲା, ଜମି ସାହୁକାରର ହେଲା । ଖୋରକ ଭାଗ ଚଷିଲା । ବର୍ଷକୁ ଏକ ଗଉଣି ଭାଗ (ଧାନ) । ତିନି ବରଷ ପରେ ସେ ଦୁ ବରଷ ପାଚ (ଫସଲ) ଖାଇଲା । ସାହୁକାରର ଧାନ ଦେଲା ନାହିଁ । ଧାନର ଦାମ ଟ ୩୦୦କୁ ପୁଣି ସେଇ ଜମି ଓ ମହୁଲ ଗଛ ଗୁଡ଼ିଆ ବନ୍ଧାଦେଲା । ତୋ'ର ବାପ ମଲା, ସାହୁକାର କେଶ୍ କଲା । କୋଟ-ଘର ଜମି ନିଲାମ କଲେ । ସାହୁକାର କିଣିଲା, ବଣ୍ଟା-ଜମାନ୍ ସାହୁକାରକୁ ଜମି ଅପକନ୍ତା କରେଇଲା (ଦଖଲଦେଲା) । ସାହୁକାର ଖମ୍ବାର ରଖି ଧାନ କରାଉଛି । ତୋ'ର ଆଉ ସେ ଭୂମିରେ ଅଧିକାର ନାହିଁ ।

ବରସୁ ହାତଯୋଡ଼, ଠିଆହୋଇ କହିଲା, ମଣିଷିବ ନାହିଁକି ? ନେଟା ପିଲା, ମାଇପ, କେମିତି ଜୀଇଁବୁ ? ସାହୁକାର, ତୁ ବରଗଛ ଭୂମି ନେ । ଡନ ଗଡ଼ଣା ପାଉଛୁ । ମହୁଲଗଛ ଗୁଡ଼ିଆ ମତେ ଛାଡ଼ ଦେ । ମୁଁ ହଳକରି ଖାଇବି ।

ଗୁରୁମୂର୍ତ୍ତି କହିଲା, ଅରେ, କୋଟ-ଘର ମତେ ଅପକାଲ୍ଯା କଲା । ସବୁ ଭୂମି ମୋ'ର । ତୋ ବାପ ଉପରେ ଆହୁରି ଟଙ୍କା ବାକି ଅଛି । ତୁ ଯଦି ଆସି ଖମ୍ଭାରି ନ ହଉ, ମୁଁ ପୁଣି ତୋ ନାମରେ ଦାବୀ (କେସ) କରିବି ।

ବରସୁ ଲମ୍ବ ହୋଇ ଗୋଡ଼ ତଳେ ପଡ଼ିଲା । ଭୂମି ଉପରେ ପଡ଼ି ଅନୁନୟ କଲା, ମଣିଷିବ ସାହୁକାର, ଧୋକାକଲେ ଲଢ଼ିପାରିବ ନାହିଁ । ମୋ ଗୁଡ଼ିଆ (ଉଚଜମି) ମତେ ଦେ । ମୁଁ ଚାଷ କରିବି । ତୋ ଧର୍ମ—।

ଦଶପୁଟି ପାଟ (ଫସଲ) ଦେବୁ ? ସରକାରକୁ ମୁଁ ଶିସ୍ତ (ଖଜଣା) ବାନ୍ଧିବି ।

ଦେବି ସାହୁକାର । ବାପର ନାଆଁ ତୋ କାଗଜରୁ କାଟିଦେ ।

ଟିକଏ ଭାବି ସାହୁକାର କହିଲେ, ଆଚ୍ଛା ତୁ ଯା । ଘରଦାନ ଛାଡ଼ି ଆସିବୁ, ପଦ୍ର ଲେଖାହେବ । ସାକ୍ଷୀ ଆଣିଥିବୁ ।

ବରସୁ ହାତ ଯୋଡ଼ି ମୁଣ୍ଡରେ ଲଗାଇଲା । କହିଲା ତୋ'ର ଦୟା ଏକ୍କା ।

ବରସୁ କଡ଼େଇ ଠିଆହେଲା ।

ସାରକା ପେଙ୍ଗ କଣ୍ଠ ହାତଯୋଡ଼ି ଆଗକୁ ଆସି ଜଣାଣ କଲା, ହେ ସାହୁକାର, ମୋ କଥା ଟିକେ ବୁଝ—

ଗୁରୁମୂର୍ତ୍ତି କହିଲା, ଆରେ ତୋର ପଦରରେ (ଉଚ ଜମିରେ) କୋଡ଼ିଏ ପୁଟି ଧାନ ପାଉଛୁ । ତାକୁ ଅସ୍ୱଧୀନ ବନ୍ଧକ ରଖି ମୁଁ ଡନକୋଡ଼ି ଟଙ୍କା ଦେଇ ପାରିବି ନାହିଁ । ତୁ ଯା ।

ପେଙ୍ଗ୍ କହିଲା, ଯା କହିଲେ ଯିବ କି ? ପୁଲକ ସଙ୍ଗେ ବାହାଘର ଠିକ୍ ହୋଇଛି । ଯୌତୁକ ଟଙ୍କା, ଗାଁ ଲୋକଙ୍କୁ ଖାଇବାକୁ ଦେବାକୁ ଟଙ୍କା, ଧନ କୋଡ଼ିଏରୁ କମରେ ହେବ ନାହିଁ । ସେ ସାହୁକାର, ପଦର ଭୂମିଟା ପଛେ ପ୍ରଧୀନ ଲେଖି ନେ । ମୁଁ କୁଲିନାଲି କରି ଖାଇବି ।

ଗୁରୁମୂର୍ତ୍ତି ଭୁଲିଗଲା ଟେକ ଚିନ୍ତା କଲା । ପଟ୍ଟନାଏକଙ୍କୁ କଣେଇ ଶୁଣି କମ୍ପ ସ୍ୱରରେ ତାରପରେ କହିଲେ, ବେଶ୍ କଳୁଆ ଦିଶୁଛି । କୌଣସି ମତେ ଯଦି ମୂଠା ଭିତରକୁ ଆସିପାରନ୍ତା, ଧନ ପ୍ରକୃଷ୍ଟ ଯାଏ ହାତରେ ରହନ୍ତା ।

ପଟ୍ଟନାଏକ କହିଲେ, ଆରେ ପେଙ୍ଗ୍ ସାହୁକାରକୁ ପଦରଭୂମି ପ୍ରଧୀନ ବନ୍ଧକ ଦେଲେ, ତୋ'ର କିଛି ରହିବ ନାହିଁ । ଘରକୁ ମାଇପ ଆଣିବୁ । ଧାଙ୍ଗଡ଼ୀ ପିଲା, ତାକୁ ଗୁଡ଼ି ବୁଲି କରି ଯିବୁ ? ଯାହା ଆଣିବୁ ପେଟକୁ ଅଣ୍ଟିବ ନାହିଁ । ଜମି ମୂକାଲା ପୁଣି ତୋର ପ୍ରଧୀନକୁ ନେବାକୁ ଟଙ୍କା କେଉଁଠୁ ପାଇବୁ ?

ସତ୍ ଏକ୍କା । ଜମିଟା ଗଲେ ନେ, ପାଞ୍ଚ ଟଙ୍କା ଶିସ୍ତ ବାନ୍ଧୁଛି ।

ପଟ୍ଟନାଏକ କହିଲେ, ଶୁଣ ପେଙ୍ଗ୍, ଯଦି ପର ଘରେ ମୂଲ ଲାଗି ପେଟ ପୋଷିବୁ ତ ମୁଁ ଯାହା କହୁଛି କର । ତୋ'ର ଜମି ତୋ'ର ଥିବ । ତୁ ଚାଷ କରି ଖାଇବୁ । ଟଙ୍କା ନେବୁ, ଏବେ ତେଣେ ବୁଲି କାମ କରିବୁ ନାହିଁକି ? ଶୀତ, ବର୍ଷା ଅଛି, ଦେହ ମନ୍ଦ ଅଛି । ଯେଉଁଦିନ ନ ଯିବୁ ସେ ଦିନ ଉପାସ ରହିବୁ । ଖାଇବାକୁ ନ ହେଲେ ତୋ, ଧାଙ୍ଗଡ଼ୀ ତୋ ପାଖେ ରହିବ କି ? ଆଉ କାହା ଘିଷ୍ଟି ନେଇ ପଳେଇବ ।

ପେଙ୍ଗ୍ର ମନରେ ପଟ୍ଟନାଏକଙ୍କର ହିତୋପଦେଶ ଭେଦିଲା, କାରଣମ୍ ସତ କଥା ତ କହୁଛି । ସେ ମୁହଁ ଖୋଲିଲା ।

ସତ କଥା କହିଲୁ ଏକ୍କା । କଣ କରିବି କହ ତ ।

ହସ ହସ ହୋଇ ପଟ୍ଟନାଏକ କହିଲେ, ଭଲ ପିଲା ତୁ ପେଙ୍ଗ୍, ତୋ'ର ବୁଦ୍ଧି ଅଛି । ତୋ ପାଇଁ ମୁଁ ପଦ୍ (ବଣ୍ଡ) ଲେଖି ରଖିଛି । ତୁ ଯଦି ମଙ୍ଗିବୁ ଏଥିରେ

ଭୋଟ (ଟିପଚିହ୍ନ) ଦେଇ ତିନି କୋଡ଼ି ଟଙ୍କା ଗଣି ନେ, ସାହୁକାରଘର ତୁ ଖମ୍ବାର ରହିବୁ । ସେ ତତେ ଖାଇବାକୁ ଦେବ, ପିନ୍ଧିବାକୁ ଦେବ, ବରଷକୁ ଏ ଋଣରୁ ଦଶ ଟଙ୍କା କଟିବ; ଛଅ ବରଷରେ ଟଙ୍କା ଶୁଝିବ । ତୋ ପଦ୍ଦ ତୁ ଫେରେଇ ନେବୁ । ସାହୁକାର ଘରେ ଖମ୍ବାର (ହଳିଆ) ଥିବୁ । ତୋ ଭୂମି ତୁ ଚଷିବୁ, ପାଟ କରିବୁ । ତୁ ଓ ତୋ ଧାଙ୍ଗଡ଼ୀ ସୁଖରେ ରହିବ ।

ତୋ ଧର୍ମ ସାହୁକାର—

ସାହୁକାର କହିଲେ, ତେବେ ପଟ୍ଟନାଏକ, ପଦ୍ଦଟା ପଢ଼ି ଶୁଣେଇ ଦିଅ । ତା'ର ଓ ସାକ୍ଷୀମାନଙ୍କର ଭୋଟ (ଟିପ) ନିଅ, ମୁଁ ଟଙ୍କା କାଢ଼େ ।

ଗୁରୁମୂର୍ତ୍ତି ବାକ୍ସ ଖୋଲି ଅଣ୍ଟିଏ ଟଙ୍କା ଆଣି ସତରଞ୍ଜି ଉପରେ ଗଡ଼ାଇ ଗଣିବାକୁ ଲାଗିଲେ । ପଟ୍ଟନାଏକ ଚଶମା ନାକ ଉପରକୁ ଖସାଇ ପଦ୍ଦ ପଢ଼ିଲେ—

ଲିଖିତଂ ପଦ୍ଦ ଦାରକା ପେଙ୍କୁ ପୁଅ—ଜାତି କନ୍ଧ ସା: ପୁରି, ବଡ଼ଗୁଡ଼ା ମୁଠା, ଅଦ୍ୟ ଅପ୍ରେଲ ମାସ ୨୭ ତାରିଖ ୧୯୩୯ ସାଲ ଏହିକି ସେ—

ଆଜି ସ୍ଥିର ମନ, ସୁସ୍ଥ ଚିତ୍ତ, ଦୃଢ଼ କମଳ ଦୋରସ୍ତ ଥାଇ, କାହାର ଶିକ୍ଷାରେ ନ ପଡ଼ି, ନିଜ ଇଚ୍ଛାରେ ଆମ୍ଭେ ସାରକା ପେଙ୍କୁ କନ୍ଧ, ପୁନ ଅଜଣା, ଗ୍ରାମ ପୁରି, ବଡ଼ଗୁଡ଼ା ମୁଠା, ବଳିମକଟକ ପୋଲିସ, ଏ ପଦ୍ଦ ସାହୁକାର କେ. ଗୁରୁମୂର୍ତ୍ତି, ଗ୍ରାମ ବଡ଼ଗୁଡ଼ା, ମୁଠା ବଡ଼ଗୁଡ଼ା, ପୋଲିସ ବଳିମକଟକଙ୍କୁ ଏ କାରଣ ଲେଖିଦେଲୁ ଯେ ଆମ୍ଭର ବିଭାଘର ନିମନ୍ତେ ୧୯ ଟଙ୍କା ଓ ଅନ୍ୟାନ୍ୟ ଆବଶ୍ୟକୀୟ ଖରଚ ପାଇଁ ଟଙ୍କା ଲୋଡ଼ା ଥିବାରୁ, ନିମ୍ନ ସ୍ୱାକ୍ଷରକାରୀ ସାକ୍ଷୀମାନଙ୍କ ଆଗରେ ସାହୁକାର ଗୁରୁମୂର୍ତ୍ତିଙ୍କଠାରୁ ଷାଠିଏ ଟଙ୍କା ନଗଦ କରଜ ସ୍ୱହସ୍ତେ ଗଣିନେଇ ଏକରାର କରୁଅଛୁ କି, ଆମ୍ଭେ ଉକ୍ତ ସାହୁକାରଙ୍କ ଘରେ ଖମ୍ବାର ହୋଇ ରହିବୁ; ସେ ଯେଉଁ କାର୍ଯ୍ୟ କରିବାକୁ କହିବେ ଆମ୍ଭେ ଅବଶ୍ୟ ତାହା କରିବୁଁ, ତାଙ୍କର ଅବାଧ୍ୟ ନ ହେବୁ ଓ ତୁମ୍ଭେ ସାହୁକାର ଆମ୍ଭର ଭରଣପୋଷଣ ନିମନ୍ତେ ପ୍ରତି ମାସକୁ ପନ୍ଦର ମାଣ ଧାନ ଦେବାକୁ ବାଧ୍ୟ ହେବ, ଲୁଣ ଓ ଲଙ୍କାମରିଚ ପାଇଁ

ଆଠଅଣା ପଇସା ଦେବ, ଲୁଗାପଟା ପାଇଁ ବର୍ଷକୁ ଦଶଟଙ୍କା ଦେବ, ପ୍ରତିବର୍ଷ ଶେଷରେ ଆମ୍ଭର କରଜ ଟଙ୍କା ବାବତକୁ ଦଶ ଟଙ୍କା ଶୁଝାଣ ନେବ ଏବଂ ଆମ୍ଭେ ଏହି ସର୍ତ୍ତରେ, ତୁମ୍ଭେ ସାହୁକାରଙ୍କ ପାଖେ ଛଅବର୍ଷ ଯାଏ ଖମ୍ଭାର କାର୍ଯ୍ୟ କରିବାକୁ ବାଧ୍ୟ ରହିଲୁ ଏବଂ ଏହି ସମୟ ମଧ୍ୟରେ ତୁମ୍ଭର କାର୍ଯ୍ୟ ଛାଡ଼ି, ଟଙ୍କା ଶୁଝାଣ ନ ହେବା ଯାଏ ଅନ୍ୟ କାହାର କାର୍ଯ୍ୟ ନ କରିବୁଁ ଓ ତୁମ୍ଭର କାର୍ଯ୍ୟରେ କୌଣସି ଦିନ ତୁମ୍ଭର ବିନା ଆଦେଶରେ, ବିନା ଛୁଟିରେ ଅନୁପସ୍ଥିତ ନ ହେବୁ, ହେଲେ କ୍ଷତିପୂରଣ ଦେବୁ ।

ପେଙ୍ଗୁ ପଢ଼ି ଶୁଣିଲା । ଗୁରୁମୂର୍ତ୍ତି ଦଶଟଙ୍କା କରି ଛଅ ଥାକ ଟଙ୍କା ଗଣି ରଖିଲେ, କହିଲେ ନେ ପେଙ୍ଗୁ, ଏ ପଟ୍ଟାରେ ଟିପଚିହ୍ନ ଦେଇ ଟଙ୍କାନେଇ ଚାଲି ଯା ।

ପେଙ୍ଗୁ ଖୁସିହୋଇ ଟିପଚିହ୍ନ ଦେଲା । ଦୁଇଜଣ ଡମ୍ବ ସ୍ୱାକ୍ଷର କଲେ । ଶେଷକୁ ସିପି ଗାଁର ମୋ'ସାକୋ ବାସ୍ୱା କନ୍ଧ ଟିପଚିହ୍ନ ଦେଇ ସାକ୍ଷୀ ପଡ଼ିଲା । ପେଙ୍ଗୁର ଅଣ୍ଟିରେ ଗୁରୁମୂର୍ତ୍ତି ଟଙ୍କା ଅଜାଡ଼ି ଦେଲେ ।

ଗୁରୁମୂର୍ତ୍ତି କହିଲେ ପଢ଼ି ଲେଖା ପାଉଣା ଦୁଇଟଙ୍କା କରଣକୁ ଦେ ।

ଆପତ୍ତି ନ କରି ପେଙ୍ଗୁ କରଣକୁ ଦୁଇଟଙ୍କା ଦେଲା ।

ସାକ୍ଷୀ ପଡ଼ିଥିବା ଡମ୍ବମାନେ କହିଲେ, ଆମ ପାଉଣା ସାହୁକାର ?

ଗୁରୁମୂର୍ତ୍ତି ପୁଣି କହିଲେ, ଦେ'ରେ ପେଙ୍ଗୁ ଟଙ୍କାଏ ଟଙ୍କାଏ । ସେମାନେ ତୋ' ସାକ୍ଷୀ ।

ପେଙ୍ଗୁ ଥା ଥା ମା ମା ହୋଇ ଡମ୍ବ ଦୁହିଁଙ୍କୁ ଦୁଇଟଙ୍କା ଦେଲା । ବାସ୍ୱା କନ୍ଧକୁ ଟଙ୍କାଏ ଯାଚିଲା । ବାସ୍ୱା ଟଙ୍କା ନ ନେଇ ସାହୁକାରକୁ କହିଲା, ଦେ ସାହୁକାର, ପଢ଼ି ଲେଖି ଦେ । ମୁଁ ଟିପଚିହ୍ନ ଦେଇ ଦଶକୋଡ଼ି ଟଙ୍କା ନେବି । ତୋର ଖମ୍ଭାର ହେବି ସାହୁକାର ।

ଗୁରୁମୂର୍ତ୍ତି କହିଲେ, ଆରେ ବାସ୍ୱା, ବନ୍ଧା ଦେବାକୁ ତୋ'ର ଭୂମି ଘଟେ କିଛି ନାହିଁ । ତୋ ଘର ଭଙ୍ଗା । ମୁଁ ଖବର ପାଇଲି, ଭେଡ଼ିକା ତା ହିଁଅକ ନୋକା

ନାଇକର ପୁଅକୁ ଦେବାକୁ ଠିକ୍ କରିଛୁ । ତୁ ତା ଝିଅକୁ ଘିଷ୍ଟିନେଲେ ସେମାନେ ତିନିଭି ଗାଁରେ ରଖେଇ ଦେବେ ନାହିଁ ।

ଆମ କୁଳରେ ଅଛୁ, ଝିଅକୁ ନେଇ ବାହା ହେବା ।

ପଟ୍ଟନାଏକ କହିଲେ, ଜନାର୍ଦ୍ଦନ ହେଲା ତ ଆସି ସେଇ କଥା କହୁଛୁ । ସାହୁକାରଠାରୁ ଟଙ୍କା ନେଇ, ଖଲାସ ନ ହେଇ ତୁ ଯଦି ତୋ କନିଆକୁ ନେଇ କୁଆଡ଼େ ପଳାଇ ଯାଉ, ସାହୁକାର ତତେ କେଉଁଠି ଯାଇ ଖୋଜିବ ?

କୁଆଡ଼େ ଯିବି ନାହିଁ ପଟ୍ଟନାଏକ, ସାହୁକାର ଯାହା କହିବ, କରିବି । ଖଲାସ ହେଇ ରହିବି । ତମେ ପାଞ୍ଚଟଙ୍କା ଲେଖେଇ ଦେବ । ତୁଇ ପଦ୍ ଲେଖି ଦେ, ମୁଁ ଚୋଟ ଦେବି, ଟଙ୍କା ନେବି ।

ଗୁରୁମୂର୍ତ୍ତି ବାକ୍ସ ବନ୍ଦ କରି ଡାକିଲେ, ଲଛମା—

ଆଜ୍ଞା—

ଦଶବର୍ଷର ଝିଅଟିଏ ଘର ଭିତରୁ ବାହାରି ଆସିଲା । ଉଦାର ମୁହଁଟିରୁ ବଳି ଯିବେ ଯିବ ଝିଅ । ନାଲି ରଙ୍ଗର ଦାମିକା ଶାଢ଼ୀ ପିନ୍ଧିଛୁ । ସର୍ବାଙ୍ଗରେ ସୁନା ଗହଣା । ସେ ସାହୁକାରଙ୍କର ଗେଲବସର ଝିଅ ।

ବାକ୍ସ ନେ ମା—

ଝିଅଟି ବାକ୍ସ ଉଠାଇ ଚାଲିଗଲା ଭିତରକୁ । ଗୁରୁମୂର୍ତ୍ତି କାଗଜପତ୍ର ସଜାଡ଼ିଲେ । ପଟ୍ଟନାଏକ ଚଶମା ଖୋଲରେ ରଖିଲେ । କାନରେ କଲମ ଖୋସିଲେ ।

ବାସ୍ତା କହିଲା, ଦୟାକର ସାହୁକାର, ଧର୍ମ କର । ତୋ'ର ଦଶବରଷ ଖଲାସ ରହିବି । ଧନକୋଡ଼ି ଦେ ।

ଗୁରୁମୂର୍ତ୍ତି କାଗଜପତ୍ର ଧରି ଉଠିଲେ, ଆରେ ବାସ୍ତା ତୋପରି ଘରଦ୍ୱାର, ଜମିବାଡ଼ି ନ ଥିଲା ଲୋକକୁ ଟଙ୍କା ଦେଇ ମୋର ୩୦୦ ବୁଡ଼ିଲା । ପଦ୍ ପୁଡ଼ା

ପାଖରେ ରଖିଛୁ । ଖମ୍ବାର ଗୁଡ଼ା ଆସାମ ଚା' ବଗିଚାରେ କାମ କରୁଛନ୍ତି । ଆଉ ମୁଁ ଦୁବ୍‌କି କର ଚୋପରଜା ଲୋକଙ୍କୁ ଟଙ୍କା ନ ଦେବି । କେବଠୁଁ କାନମୋଡ଼ ହେଉଛୁ ।

ଗୁରୁମୂର୍ତ୍ତି ମୁଣ୍ଡ ହଲାଇ, ନାହିଁକଣ ଘରେ ପଶିଲେ ।

ପଟ୍ଟନାଏକ ଉପଦେଶ ଦେଲେ, ହେ ବାପ୍ପା, ତୁ ଯା ଶୁଣି ସାହୁକାର ଦେଖ ।

ପଟ୍ଟନାଏକ ଓ ତାଙ୍କ ପଛେ ଅନ୍ୟମାନେ ଚାଲିଗଲେ । ବାପ୍ପା ହତାଶ ହୋଇ ଠିଆହୋଇ ଚାରିଆଡ଼କୁ ଚାହିଁ ମୁଣ୍ଡ ଆଉଁସିଲା । ସୁନାର ରୂପ ଉଭାହେଲା ଆଖି ଆଗରେ । ସୁନାର କଥା କାନରେ ବାଜିଲା ସତେ କି, ଯିବାରେ ବାପ୍ପା ଜମଗିର ପାହାଡ଼ ମାଳକୁ । କେହି ଦେଖିବେ ନାହିଁ, କେହି ଜାଣିବେ ନାହିଁ । ସେଇଠି ରହିବା । ବାପ୍ପା ଦୀର୍ଘଶ୍ୱାସ ଛାଡ଼ିଲା ।

କନାମ ଗାଁର ଡମ୍ବ ସାହି । ହୁଆଲ ରୁଛି ଡମ୍ବର ଘର ସାହି ମଝିରେ । ସଞ୍ଜ ହୋଇ ଆସୁଛି । ରୁଛି ଗମ୍ଭୀର ହୋଇ ବସିଛି । ତା'ର ଗୋଟିଏ ପାଖରେ ବସିଛି ନାଗବଂଶ ଚଇତୁ ଡମ୍ବ ଓ ଆର ପାଖରେ ବସିଛି ଦାଦବଂଶ ସୁନ୍ଦୁ ଡମ୍ବ । ଚଇତୁ ଆଗରେ ଦଶ ବାରଟି ଟଙ୍କା ଥୁଆ ହୋଇଛି ।

ଚଇତୁ କହିଲା, ମିଛ କହୁ ନାହିଁ ରୁଛିଆ ଭାଇ, ସୁନ୍ଦୁଠୁଁ ବୁଝିନ୍ତୁ ।

ସୁନ୍ଦୁ କହିଲା, ସତ କଥା, ରୁଛିଆ ଭାଇ । ପୁଙ୍ଗି କନ୍ଧ ଘରେ ଏଇ ବାରଟି ଟଙ୍କା ଥିଲା ।

ରୁଛି କହିଲା, ତମେ ଦହେଁ ଏକ ହୋଇ ମତେ ଚଟା କାଟିବାକୁ ବସିଛ, ନାଇଁରେ ? ମତେ ଚହ୍ଲିଛଟି ? ତମ ଦ'ଜଣଙ୍କ ଚୁଟି ମୋ ହାତରେ, ଏ କଥା ମନେ ରଖିଥା । କୋମଲା ପେଟାର ତେଲ୍ପି ମହାଜନର ଗାଈ ଚୋରେଇ ଡୋଙ୍ଗ ଭିତରେ ମାରି ଖାଇଲ । କେଣ୍ ହେଲା । କଏ ବଞ୍ଚେଇଲା ତମକୁ ?

ଚଇତ୍ରୁ କହିଲା, ତୋ ଋଣ ଶୁଝିପାରିବୁ ନାହିଁ । ତୁଇ ବୁଦ୍ଧି ଦେଲୁ ବୋଲି ସିନା ହେଲା । ମଙ୍ଗୁଳୁର ସନ୍ଧା ଉପରେ ଗାଈ ମୁଣ୍ଡ ଆଉ ଗୋଡ଼ ଥୋଇଦେଇ ଆସିଲି । ମଙ୍ଗୁଳି କ ଥା ମା ନ ଥିଲେ । ପୋଲିସ ଧରିଲା ତାକୁ । ତୁଇ କହିଲୁ ସିନା କୋଟ-ଘରେ ଆମେ ଦୁହେଁ ହଲପ ନେଇ କହିଲୁଁ, ମଙ୍ଗୁଳି ଗାଈ ମାରିବା ଦେଖିଛୁଁ ।

ସୁଠ୍ କହିଲା, ଆଉ ବୁଦ୍ଧି ଖାଇ ବି କହିଥିଲି ତ, ମଙ୍ଗୁଳି ତେଲିର ଗାଈ ମାରି ମାଂସ ଟିକେ ଦେଇଥିଲା । ସେ ନ କହିଥିଲେ କ'ଣ କୋଟ-ଘର ବିଶ୍ୱାସ କରିଥାଆନ୍ତା ନା ମଙ୍ଗୁଳିକୁ ଛଅମାସ ଶିକ୍ଷା କରେଇ ଥାଆନ୍ତା ?

ବୁଦ୍ଧି କହିଲା, ମତେ ଗୁଣି ଅଛୁ । ଅଚ୍ଛା, ତୁ ନିଜେ ହିସାବ କର । ପୁଣି କନ୍ଧ ଗୁରୁମାଝି ସାହୁକାରଠୁ ନେଇକୋଡ଼ି ଆଣିଲା । ସଙ୍ଗେ ସଙ୍ଗେ କଚେରିକୁ ଦଶ ଟଙ୍କା ଦେଲା । ଘରକୁ ନ ଫେରି ସିଧା ସିଧା ନାଇକ ଘରକୁ ଯାଇ ଗୋଟାଏ ଗାଈ କିଣିବାକୁ କୋଡ଼ିଏ ଟଙ୍କା ଦେଇ ଆସିଲା । ବାହାଘର ଦିନ ଗାଁ ଲୋକେ ଖାଇବେ । ପୁଲକର ମାଆକୁ ଝୋଲା ଟଙ୍କା ଦେଲା କୋଡ଼ିଏ ଏକ । ଆଉ କ'ଣ ଖରଚ କଲା ମୁଁ ଜାଣେ ନାହିଁ । ଏତିକି ଟଙ୍କା ସାତ ଟୋକି ଘର ଟିହିରେ ଯୋଡ଼ିଥିଲା । ଆଜି ଖାଇବେଳେ ମଦ ଖାଇବାକୁ ସୁଠ୍ ତାକୁ ଡାକି ନେଇଗଲା । ମୁଁ ବାରଟି ଝୋଲା ଘର ଝୋଲା ଏତିକି ଟଙ୍କା ପାଇଲି । ରାତିଟାକୁ ବୁଜାଦେଇ ଆସିଛୁ । ନୋହିଲେ ସେ ଜାଣିବ ଯେ— ।

ବୁଦ୍ଧି ମନେ ମନେ ହିସାବ କରି କହିଲା, ହଁ ହେଲା ।

ସେ ଟଙ୍କାକୁ ସମାନ ତିନି ବାଣ୍ଟ କରି କହିଲା, ନେ ସୁଠ୍, ନେ ଚଇତ୍ରୁ— ।

ତିନିହେଁ ଅଣ୍ଟାରେ ଟଙ୍କା ଖୋସିଲେ ।

ବୁଦ୍ଧି ଗମ୍ଭୀର ହୋଇ ମୁଣ୍ଡ ହଲାଇ କହିଲା, ନାହିଁ ନାହିଁ କରୁଥିଲା, କେତେ କଷ୍ଟରେ ବୁଝାସୁଝା କରି ବାପ୍ପା କନ୍ଧକୁ ଗୁରୁମାଝି ସାହୁକାର ପାଖକୁ ନେଇଥିଲି ।

ଚଇତ୍ରୁ କହିଲା, ତା'ର ଘର ନାହିଁ, ବାପ ମା କେହି ନାହାନ୍ତି ବୋଲି ସାହୁକାର ଟଙ୍କା ଦେଲା ନାହିଁ ।

ସୁନ୍ଦ କହିଲା, ସବୁ ସାହୁକାର ଟଙ୍କା ଦେଇଥାନ୍ତି, ବାସ୍ୱା ଯେଉଁଠି ରହିଥିଲେ ବି ମୁଁ କଷ୍ଟପୂ ଦେଇକ ହାତ କରି ତା ଆଗରେ ଥୋଇଦେଇଥାନ୍ତି ।

ବୁଢ଼ି ଦୁଃଖିତ ହୋଇ କହିଲା, ହୁଁ, ସବୁ ବଳିଛଗଲା ।

ବୁଢ଼ି ଚିନ୍ତା କଲା । ତା'ର ମୁହଁ ହସକଳ ଆସିଲା । ଗୁନ ଗୁନ କରି କହିଲା, ମଇରେ ଚଇରୁ, ନେପାଳପୁର ବନମାଳୀ ଶ୍ରେଣୀ ସାହୁକାର ଘରେ ତମେ ଦହେଁ ଖମ୍ଭାର ଅଛ ପରା ।

ଚଇତୁ କହିଲା ହଁ, ବନମାଳୀ ସାହୁକାର ତା ଘରେ ବିଷମକଟକରେ ଥାଏଛ । ଦାକାଲଗୁଡ଼ା ଗାଁରେ ତାର ଗୃହ ଘର ଅଛି । ମୁଁ ଆଉ ସୁନ୍ଦ ଦାକାଲଗୁଡ଼ାରେ ରହୁଁ । ସେଇଠି ତାର କାମ କରୁଁ । ବର୍ଷରେ ବି ତା ଘର ଜଗିବାକୁ ସେଇଠି ରହୁଁ । ସାହୁକାର ଏକୁଟିଆ ଲୋକ । ସେ ବିଷମକଟକରେ ରହିଲେ, ତା ଶଳା ଦାକାଲଗୁଡ଼ାରେ ରହେ । ସେ ଦାକାଲଗୁଡ଼ା ଆସିଲେ, ତା ଶଳା ଗୋବିନ୍ଦ ବିଷମକଟକରେ ରହେ ।

ଗୋବିନ୍ଦ ମଦ ଖାଏ ? ବୁଢ଼ି ପଚାରିଲା ।

ସୁନ୍ଦ କହିଲା, ଅରେ ବୁଢ଼ି ଝିଅ, ତା କଥା କାହିଁକି କହୁଛୁ । ଖାଲୁଆ କେତେ ଟାଳୁଛୁ । ଖାଏ ତ ଖାଏ, ମଦରେ ଗାଧୋଇ ପଡ଼େ । କେତେ ଭୂମି ବାଡ଼ି ତାର ଥିଲା ତୁ ଜାଣୁ । ମଦ ପାଣିରେ ସବୁ ଶେଷ କରିଦେଲା । ଏବେ ବନମାଳୀ ଦେଲା ଭାତ ଖାଉଛି । କଣ କରିବ ? ବନମାଳୀ ସାହୁକାରର ମାମୁଁ ପୁଅ ଭାଇଟା, ପୁଣି ଶଳା ହେଲା । ସାହୁକାର କିଛି କହେ ନାହିଁ ।

ଦାକାଲଗୁଡ଼ାରେ ଅଛି କିଏ ? ବୁଢ଼ି ଆଗ୍ରହରେ ପଚାରିଲା ।

ଚଇତୁ କହିଲା, ବନମାଳୀ ସାହୁକାର ଦିଲ୍ଲୀକଟକ୍ଟୁମ୍ବ ନେଇ ଦଶଦିନ ହେବ ଥିଲା । ଧାନ ମୁଗ ବିକି କରୁଥିଲା । କାଲି ତା ଦିଲ୍ଲୀକୁ ଗୋବିନ୍ଦ ବିଷମକଟକରେ ଛାଡ଼ି ଆସିଛି । ଗାଡ଼ି ପାଇଲେ ଦକୋଳୁ ବନମାଳୀ ବାହୁଡ଼ି ଯିବ । ଗୋବିନ୍ଦ ରହିବ ।

ବୁଢ଼ି ଚମ୍କାଇକରି, ଗୁନ ଗୁନ କହିଲା ସବୁ ଟଙ୍କା ନେଇଯାଇଛୁ ଚଇରୁ? କାନଯପଟ କିଛୁ ରଖିଯାଇ ନାହିଁ?

ଚଇତୁ କହିଲା, କେମିତି ଜାଣିବି? ମାଇପର ଲୁଗାପଟା ଗୋଟେ ପେଡ଼ିରେ ରଖିଛି। କୁଞ୍ଚି ଦେଇଛି, ଘରେ ମିଣା (ମଧ) ତାଲା ଦେଇଛି। ସେଇ ପେଡ଼ିରେ ଯଦି ଟଙ୍କା ଥିବ ତ—

ବୁଢ଼ା ପଚାରିଲା, କୁଞ୍ଚି ଗୋବିନ୍ଦକୁ ଦେଇଛୁ?

ଚଇତୁ କହିଲା, ମୁଁ ଜାଣେ ନା। ସାହୁକାର ଜନାଦନ ସମ୍ବଗଡ଼ାରେ ରହି ଫେରିବ। ସେ କୁଞ୍ଚି ନେଇ ଯାଇଥିବ। ଗୋବିନ୍ଦ ପଦାଘରେ ଗୁହାଳ ପାଖରେ ରହୁଛି।

କେତେ ହଳ ରଖିଛି ରେ?

ଦୁଇ ହଳ ଗାଈ ବଳଦ। ଜନହଳ ପୁଣି।

ବୁଢ଼ି ଏଣିକି ଟେଣିକି ଚାହିଁ ତୁନି କରି କହିଲା, କାଲି ସଞ୍ଜ ଆଗରୁ ଗୋବିନ୍ଦକୁ ପେଟେ ମଦ ଖୋଇଦେଇ ତୁମେ ଦୁହେଁ ବଣମକଟକ ଚାଲିଯିବ। ସାହୁକାରର ମାଇପକୁ କହିବ ମା, ତମେ ଏକା ଅଛ ବୋଲି ଗୋବିନ୍ଦବାବୁ ଜଣେ ରହି ଆମକୁ ପଠାଇଲେ। ସାହୁକାର ଆସିଲେ ଆମେ ଯିବୁ।

ସେ ଯଦି ରାଜି ନ ହୁଅନ୍ତି?

ହେବେଟିରେ ହେବେ। ଆଜି ରାତିରେ, 'ବଣମକଟକରେ, ରାତି ଅଧରେ ତାଙ୍କର କବାଟ ଖଡ଼ ଖଡ଼ ହେବ। 'ଚୋର ଚୋର' ବୋଲି ଡାକ ପଡ଼ିବ। କାଲି ଗୋବିନ୍ଦବାବୁଙ୍କ ପାଖକୁ ଖବର ଆସିବ। ସେ କ'ଣ ମଦପାଣି ଛାଡ଼ି ଯିବ କି? ତମୁକୁ ପଠେଇବ। ଯିବନା—?

ଚଇରୁ କହିଲା, ଭଲେ ଦେବ ବଣ ଶାଳ!

ସୁନ୍ଦୁ କହିଲା, ତୋ ଗୋଡ଼ଟା ମୋ ମୁଣ୍ଡରେ ଟେକିଲୁ ଆଗ—

ସେ ବୁଢ଼ିର ଗୋଡ଼ ଟାଣିଲା ।

ବୁଢ଼ି ଗୋଡ଼ ଟାଣିନେଇ କହିଲା, ଆରେ ରହ, ମୁଁ ଆଗରୁ ସବୁ ବନ୍ଦ କରିଛି । ହଁ ଶୁଣ, ସଞ୍ଜରୁ ସକାଳ ଯାଏ ଘର ଚାରିପାଖେ ପହରା ଦେଇ ପାଟି କରୁଥିବ । ଏକୁଟିଆ ରହିବ ନାହିଁ । ଆଉ ତ ଚାରିଜଣ ଖମ୍ବାଙ୍କ ସାଥିରେ ରହିବ ।

ଚଇତୁ ପଚାରିଲା, ଆମର ଭାଗ କ'ଣ ?

ସୁନ୍ଦୁ କହିଲା, ମୋ କଥାଟି କହ—

ବୁଢ଼ି କହିଲା, ଯାହା ମିଳିବ, ଅଧେ ଅଧେ ବାଣ୍ଟିବା ।

ଘର ଆଗରୁ କିଏ ଜଣେ ଡାକ ଛାଡ଼ିଲା, ହେ ବୁଢ଼ିଆ—

ବୁଢ଼ିଆ ବୁଝିଲା, ବାଘୁଆ କଣ୍ଠ ତାକୁ ଡାକୁଛି । ସେ କହିଲା, ହେ ଚଇତୁ, ହେ ସୁନ୍ଦୁ, ବାଘୁଆ କଣ୍ଠ କାହିଁକି ଆସିଲାଣି । ତମେ ଦିହେଁ ବାଡ଼ିବାଟେ ଚାଲିଯାଅ । ଯାଅ, ଯାଅ,—ଜଲ୍ଦି । ମୁଁ ଯେମିତି କହିଲି, ତମେ ଏକା ସେମିତି କରିବ । ଦେଖ, ଯଦି ମୋ ସଙ୍ଗେ ଖେଳିବାକୁ ବସିବ, ତାର ପ୍ରଭାବ ପାଇବଟି କହୁଛି ।

ଚଇତୁ ଓ ସୁନ୍ଦୁ ତରବର ହୋଇ ବାଡ଼ିବାଟେ ଚାଲିଗଲେ ।

ବୁଢ଼ି ତମ୍ବୁ ନିଜକୁ ସଜାଇଲା । କାମିଜ ପିନ୍ଧି ମୁଣ୍ଡରେ ଧାନଆ ମାରିଲା । ଲମ୍ବ କଳା ମିଟମିଟ ଦାଢ଼ିରେ ଆଙ୍ଗୁଠି ସାଉଁଳି ଉଠିଲା ! ହସିହସିକା ଜବାବ ଦେଲା, ଆରେ, ବାଘୁଆ ପାଟି ପରି ଶୁଭୁଛି ତ । ଆସୁନୁ ଭିତରକୁ ।

ବାଘୁଆ ଭିତରକୁ ଆସିଲା ।

ମୁଁ ତ ବାହାରିଥିଲି ତୋ ଘରକୁ ରେ ବାଘୁଆ । କାଲେ ତୁ ସାହୁକାର ଘରୁ ଫେରି ନ ଥିବୁ ବୋଲି ଡେରି ଡେରି କରୁଥିଲି । ସଞ୍ଜ ହୋଇଆସିଲାଣି, ବସିଯା ଟିକେ ।

ସାହୁକାର ଟଙ୍କା ଦେବାକୁ ମନା କଲାରେ ବୁଢ଼ିଆ ।

ମନା କଲା ? କ'ଣ କହିଲା ? ଠଆହୋଇ ରହିଲୁ ଯେ—

ବାହାରେ ଫିକାଳିଆ ଜହ୍ନ ଆଲୁଅ । ଘର ଭିତର ଅନ୍ଧାରୁଆ । ଅଟେଣି ନ କରି ବାଘୁ ବସିଲା । ବୁଢ଼ି ଆଗଘରୁ ଆଲୁଅ ଆଣି ପାଖରେ ରଖିଲା । କହିଲା, ଏଥିକି ମନଦୁଃଖ କରୁଛୁ କାହିଁକି ?

ବାଘୁ କହିଲା, ଗୁରୁମୂର୍ତ୍ତି ସାହୁକାର କହିଲା, ମୋର ଭୂମି ଧାଡ଼ି ନାହିଁ, ପୁଣି ନାଇକର ପୁଅ ମାଗତା ସୁନାକୁ ବାହା ହେବ । ସେଥିପାଇଁ ସେ ମତେ ଟଙ୍କା ଦେଲା ନାହିଁ । କହିଲା, ମୁଁ ଧାଙ୍ଗଡ଼ୀ ଧରି କୁଆଡ଼େ ପଳେଇବି ।

ସୁନାକୁ କହିଲୁ କି ?

ନାଇଁ, ସାହୁକାର ଘରୁ ଫେରି ଦେଖିଲି, ସୁନା ମୋ ଘର ପାଙ୍କ ପଥର ଉପରେ ବସିଛି । ସେ ମତେ ଦେଖି ନାହିଁ । କାଅଣ ତାକୁ କହନ୍ତି । ମୁଁ ତାକୁ ଦେଖା ନ ଦେଇ ଲୁଚି କରି ଜଙ୍ଗଲ ଆଡ଼େ ଚଲେଇଗଲି । ସଞ୍ଜ ହେଲାରୁ ତୋ ପାଖକୁ କହିବାକୁ ଆସିଲି ।

ବୁଢ଼ି ଟିକଏ ନୀରବ ହେଲା ।

ଟିକଏ ରହି ବାଘୁ ହତାଶ କଣ୍ଠରେ ପୁଣି କହିଲା, ନାଇରେ ବୁଢ଼ି ହଉ, ସୁନା ମାଗତାକୁ ବାହାହେଉ । ମୋର ଏ ଗାଁରେ କ'ଣ ଅଛି, କିଏ ବା ଅଛି ? ସୁନା ସଙ୍ଗେ ଦେଖାହେଲେ ସେ କହିବ, ଚାଲ ପଳେଇବା କିମ୍ବିରି ପାହାଡ଼ ଉପକୁଳକୁ । ସେ କହିଲେ ମୁଁ ନାଇଁ କରିପାରିବି କି ?

ଉ ହୁଁ—

ତାକୁ ନେବ କିଏ ଣ ବାଘ ଭାଲୁ ଖୋଇବାକୁ ? ଦବୁଦନେ ବାଟରୁ ମଣିଷ ଟାଣି ନେଉଛି । ମୋର ଲାଗି ତାକୁ ବାଘ ଖାଇବ ?

ସତେ ବାପ୍ପା, ସବୁଆଡ଼େ ବାଘ ଖାଉଛୁ । ଲୁକଲୁକ ଆସି ପଛରୁ ଲଣ୍ଡ ମାଉ ବେଡି (ଗୋଟେଇ) ନେଇ ପଳଉଛୁ । ଜାଣିଲେ ନା କାଣ୍ଡ ମାଉବୁ କ, ଟାଙ୍ଗି ଧଉ ଲଢ଼ିବୁ ? ଆଉ ବ ସେ ବାଘ କ ଠାକୁରଣୀ ସେ କଥା କଏ କହୁବ ।

ବୁଢ଼ି ଭାଇ—

କଅଣେରେ ?

ପଳେଇକ୍ଷ ଏ ଗାଁରୁ ।

କୁଆଡ଼େ—?

କୋଉପୁଟ । ସେଠୁ ସହାବ ଲୋକ ନେଇ ଆସାମ ପଠାଉଛୁ । ମୁଁ ଯିବି । ଏ ଗାଁରେ ରହବି ନାହିଁ । ସୁନା ହେବ ମାଗଜାର ମାଇପ । ମୁଁ କହୁଲ, ହେ ସୁନା ମୁଁ ତୋର ଖମ୍ଭାର ହେବ । ସୁନା କହୁଲ, ମତେ କ'ଣ ଖମ୍ଭାର ରଖିବାକୁ ଲୋକ ମିଳବ ନାହିଁ ? ସତକଥା ବୁଢ଼ି ଭାଇ ।

ଆରେ ବାପ୍ପା, ଅସାମ ବହୁତ ଦୂରରେ । ସେ ଯାଏ ସେ ଆଉ ଫେରେ କ ? କେତେ ଲୋକ ଗଲେଣି, କଏ ଫେଉଛୁ କହୁଲୁ ?

ମୁଁ ବ ଫେରବ ନାହିଁ ?

ହସି ହସି ବୁଢ଼ି ବାପ୍ପାର ହାତ ଧଉଲ, କହୁଲ, ସତେ ତୁଇ ବାପ୍ପାଟେ ରେ । ମୋ କଥା କଉବୁ ? ଦେଖ୍, ଯଦ ଜାକର ଠାକୁରଣୀ ମନ କଉବ, ତୋର ଅଭାବ ହେବ ନାହିଁ । ଭାଉ ସହଜ । ମୁଁ ଜବାବ ଦେଉଛୁ, ସୁନା ତୋ'ର ହେବ । ଢୋଲ ଟଙ୍କା, ଲୋକଙ୍କୁ ଖାଇବାକୁ ଦେବାକୁ ଟଙ୍କା, ଗାଈ, ତୋର ଯାହା ଲୋଡ଼ା ସବୁ ମିଳବ । ପାଉବୁ ?

ବାପ୍ପା ଆଶ୍ଚର୍ଯ୍ୟ ହୋଇ ବୁଢ଼ିର ମୁହଁକୁ ଚାହିଁ ରହୁଲ ।

ଶୁଣ୍—

ବାଘୁଆର କାନ ପାଖକୁ ମୁହଁ ନେଇ ଚୁଙ୍ଗି କେତେ କ'ଣ କହିଲା । ବାଘୁଆର ଧୈର୍ଯ୍ୟ ଭାଙ୍ଗିଲା । ସେ ଭୟରେ ଚାରିଆଡ଼କୁ ଆବା କାବା ହୋଇ ଚାହିଁ ହଠାତ୍ ଚମକି ଉଠିଲା ପରି କହିଲା—ନାହିଁ ନାହିଁ ଚୁଙ୍ଗି ଭାଇ, ମୁଁ ପାରିବି ନାହିଁ । ମୁଁ କଞ୍ଚା ପିଲା । ଖମ୍ବାରି ହୋଇ ବଞ୍ଚିବି । କୁଲିନାଲି କରିବି । ବଣ ଜଙ୍ଗଲରେ ବୁଲି ଶିକାର କରିବି । ଝୋଲା କୂଳରୁ କନ୍ଦା ଖୋଳି ଖାଇବି । ମୁଁ—ମୁଁ ଚୋରି କରିବି ନାହିଁ । ପୁନାକୁ ମୁଁ ଚାହେଁ ନାହିଁ ଚୁଙ୍ଗି ଭାଇ, ସେ ମାଗତା ଘରକୁ ଯାଉ ।

ହାଃ, ହାଃ—ଆରେ ପୁନାକୁ ତୁ ଚାହୁଁ ନାହୁଁ, ସେ ତତେ ଚାହେଁ, ମାଗତାକୁ ଚାହେଁ ନାହିଁ । ମାଗତା ଘରକୁ ଗଲେ ସେ ବଞ୍ଚିବ କି ? ମରିଯିବ । ହଁ, ଦେଖ୍, ତତେ ମୁଁ ଚୋରି କରିବାକୁ କହୁଁନାହିଁ ତ । ତୁ ମୋ ସାଙ୍ଗରେ ଯିବୁ । ମୁଁ ସବୁ କରିବି । ଖାଲି ତୁ ମୋ ସାଙ୍ଗରେ ଥିବୁ, ବସ୍ । ଆରେ ବାଘୁଆ, ମୁଁ ଡମ୍ବଘର ପୁଅ ନା ? ଶିକ୍ଷା ଯିବାକୁ ମୋର ଡର ଅଛି କି ? ଯଦି ପୁଲିସ ଧରେ, ମୁଁ ତ ମାନିଯିବି । ଶିକ୍ଷା ଯିବି । ତୋର କିଏ କଣ କରିବ ?

ନାହିଁ ନାହିଁ—

ତୋର ଇଷ୍ଟ (ଇଚ୍ଛା) । ମୋର ଟଙ୍କା କ'ଣ ହେବ ? ଯେଉଁଠି ବାହା ହେବାକୁ ମନହେବ, ଧାଙ୍ଗଡ଼ୀ ଘରେ ବରପେ ଯାଇଁ ଗୋତିହୋଇ ଖଟିବ । ତାପରେ ଧାଙ୍ଗଡ଼ୀ ଆଣିବ । ତୁଇ ମୋ'ର ପିଲାଦିନର ସାଙ୍ଗଟା । ପୁନାଟା ବି ଭଲପିଲା । ତମ ଦୁହିଁଙ୍କର ଭଲପାଇଁ ବର୍ଷେ କି ଦି'ବରଷ ଶିକ୍ଷା ଗଲେ କି ସିଟାମ୍ (ସି: ଟି: ଏମ୍—ଅର୍ଥାତ କ୍ରମିନେଲ ଟ୍ରାଇବ ମେମ୍ବର) ହୋଇ ପ୍ରତି ରାତିରେ ଥାନ'ରେ ଶୋଇଲେ ମୋର ଡର ନାହିଁ । ଯାହା ମିଳିବ, ତତେ ମୁଁ ଅଧେ ଦେବି । ଖାଲି, ତୁ ମୋ ସାଙ୍ଗରେ ଯିବୁ, ତୋର କି ଡର ?

ଯଦି ଧରା ପଡ଼ୁ ?

ମୁଁ ସିନା ଧରା ପଡ଼ିବି, ତୋ'ର କଣ ହେବ ? ତୁ ଘର ପଛରେ ଗଛମୂଳେ ଲୁଚିଥିବୁ । ପଳେଇ ଆସିବୁ । ପାରିବୁ ନା ? ତୋ'ର ଭଲକୁ କହୁଛି । ଯାହା ମିଳିବ, ତୋ'ର ଅଧେ, ମୋର ଅଧେ । ଯିବୁ ? କାଲି ରାତିରେ ?

ଯିବ ।

ବୁଢ଼ି ବାପ୍ପାର ହାତ ଧରିକି କହିଲା, ଦେଖ୍ । ଏଥର ତୁ ନିଶ୍ଚିନ୍ତ ରହ । ମୁଁ କହିଦେଉଛି, ସୁନା ତୋ'ର ହେବ । ଦେଖିବୁ ମାଗଡା କେମିତି ସୁନାକୁ ନେବ । ହଁ—ଦେଖ୍ ବାପ୍ପା, ମନକଥା ମନରେ ଥିବ । କେହି ଯେପରି ନ ଜାଣନ୍ତି । କାହାକୁ କହିବୁ ନାହିଁ ।

ସୁନାକୁ ?

ନାଇଁ । ମାଇପି ଲୋକ । ତାଙ୍କ ପେଟରେ କଥା ରହେ ନାହିଁ । ଆଚ୍ଛା, ତୁ ଏଥର ଯା— । ଦେଖ୍—କାଲି ସଞ୍ଜବେଳେ ମୁଁ ତୋ ଘରକୁ ଯିବି । ତୁ ଥିବୁ ଏକା ।

ବାପ୍ପା ଧୀରେ ଧୀରେ ଚାଲି ଯାଉଁ ଯାଉଁ ପଛକୁ ଫେରି ଚାହିଁ କହିଲା, ଥିବି ।

ବାପ୍ପା ଚାଲିଗଲା । ବୁଢ଼ି ଠିଆହୋଇ ଏଣିକି ତେଣିକି ଚାହିଁଲା । ଉଚ୍ଚସ୍ୱରରେ ହସିଉଠି ମନକୁ ମନ କହିହେଲା, ମୁଁ ଡମ୍ବୁଣିଲା, ପରି ମୁଣ୍ଡରେ ନଡ଼ିଆ ଭାଙ୍ଗେ । ଆରେ ବାପ୍ପା, ତୁ କନ୍ଧ, ଅନ୍ଧ । ଚାହିଁଥିବୁ । କିଛି ଦେଖିବୁ ନାହିଁ ।

ଗେଣ୍ଡ଼ା (ନାଳ) କୂଳ । ଜଙ୍ଗଲ ଭିତର । ସମସ୍ତ ଅପରାହ୍ଣ । ବାପ୍ପା ସୁନାର ହାତ ଧରି ଯାଉଁ ଯାଉଁ ଅଟକିଗଲା । ଚାରିଆଡ଼କୁ ତରଙ୍ଗ ଭରଙ୍ଗ ହୋଇ ଚାହିଁଲା । କହିଲା, ଏଇଠି ଟିକେ ବସି ଦମ୍ ନେବା ସୁନା । ଦଉଡ଼ି ଦଉଡ଼ି ଆସି ତୁ ଥକି ପଡ଼ିଥିବୁ । ବସ୍ ।

ଦୁହେଁ ଗଛତଳ ଦେଖି ବସିଲେ । ସୁନା ବହିଲା ଆଖିରେ ବାପ୍ପାକୁ ଚାହିଁ ପଚାରିଲା, ତୋ ପିଠିରେ ଏତେ ମାଡ଼ଦାଗ ବସିଛି ? ପୁଙ୍ଗିଟା ବଡ଼ ଦୁଷ୍ଟ । ପୁଲିଶକୁ ବାହାହେବ ବୋଲି ତାର ଗୋଡ଼ ତଳେ ପଡ଼ୁ ନାହିଁ । ତା'ର ଠକ୍କା

ଘେଞ୍ଜଗଲା, ଲୋକେ ପଗ୍ଳାଗବାବୁ କହୁଛୁ, ଯିଏ ନେଲା ତା ଧର୍ମ । ଠାକୁରାଣୀ ତାଙ୍କୁ ଖାଇବ । ପୁର୍ଣ୍ଣି ପୁଣି ଯାଇ ସାହୁକାରଠୁଁ ଟଙ୍କା ଆଣିଛୁ । ସେଇ ଗୋଟାଏ ବାଡ଼ ଧରି ତତେ ଆଉ ତୋ ସାଙ୍ଗ ଲୋକଙ୍କୁ ପିଟିନ କି ? ତୁଇ ତାକୁ ପିଟିଲୁ ନାହିଁ ?

ସୁନାର ମୁଣ୍ଡଟିକୁ କାନ୍ଧକୁ ଆଉଜାଇ ଆଣି ତା'ର ପଠିରେ ହାତ ବୁଲାଇ ବାପ୍ପା କହିଲା, ଆଲୋ ପାଗଳୀ, ମୁଁ କେମିତି ତାଙ୍କୁ ମାରନ୍ତି ? ଛପି ଛପି ଯାଇ ପଥର କଡ଼ରେ ଲୁଚଲି । ଜଙ୍ଗଲ ଭିତରେ ମୋ ସାଙ୍ଗମାନେ ଲୁଚକରି ବସିଥାନ୍ତି । ତୁଇ ଯେମିତି ପାଣି ନବାକୁ ପଥର କଡ଼କୁ ବୁଲି ଆଇଲୁ, ମୁଁ ତୋ ହାତ ଧରି—

ହଁ, ଘିଚ ନେଇଥାନ୍ତୁ ତ । କାଲି ସଞ୍ଜବେଳେ ଲତା ମତେ କହୁଥିଲା ବୋଲି ସିନା ମୁଁ ଘଣ୍ଟାଏ କାଳ ତତେ ରୁହିଁ ବସିଥିଲି । ପୁଲକ ଛିଁବାକୁ ଡର ଡର ହେଉଥାଏ । ଲତା କହିଲା, କନେ, ପୁର୍ଣ୍ଣିକୁ ଘଡ଼ିଏ ନ ଦେଖିଲେ ବଣା ହୋଇଯିବୁ କି ? ଗୀତ ବୋଲ—। ପୁଲକ ଗୀତ ବୋଲିଲି—

ତୁଇ ଆଉ ଲତା ମିଶା (ମଝ) ଗୀତ ବୋଲୁଥିଲ ତ ।

ହଁ । ତୁଇ ଯେତେବେଳେ ପଥର କଡ଼ରୁ ଆସିଲୁ, ଡରରେ ଖଡ଼ ଖଡ଼ ହେଲି । ଲତା ମତେ ଚିମୁଟି ଦେଇ ଅ.ଖି ଠାରି କହିଲା, ଯା ଲୋ ପାଣି ଅଣିବୁ ।

ଲତା ମତେ ଦେଖିଥିଲା ?

ହଁ ରେ, ସେ ତତେ ଆଗ ଦେଖିଛି । ପୁଲକ କିଛୁ ଜାଣି ନାହିଁ । ଗେଡ଼ଡ଼ା ସେ ପାଖରେ ପୁର୍ଣ୍ଣି ବାଁରେଇ ହୋଇ ଡାଳ ଭାଙ୍ଗୁଥାଏ । ପୁଲକ ତାଆର ଆଡ଼କୁ ରୁହିଁ ଗୀତ ବୋଲୁଥାଏ । ଦେଖିଲୁ କି ?

ତୋ ବନା ମୁଁ ଅଉ କାହାକୁ ଦେଖି ନାହିଁ । ତତେ ଯେତେବେଳେ ଦୁଇ ହାତରେ ଶୂନ୍ୟେ ଶୂନ୍ୟେ ଟେକନେଇ ଦଉଡ଼ିଲି, ସେ ପାଖୁ କିଏ ଗୋଟାଏ ପାଟିକରି ଡାକିଲା—

ପୂଜକ ଡାକିଲା—

ହୋଇଥିବ । ପୂର୍ଣ୍ଣି ତ ସେପାରେ ଗେଡ଼୍ ଡ଼ାର ସେପାଖରୁ ଏପାଖକୁ ଡେଇଁ ଆସିଲା । ଯେଉଁ ଗୁଣ୍ଡ ଧରିଥିଲା, ସେଇଥିରେ ମୋ ପିଠିରେ ପିଟିଲା । ତତେ ଛାଡ଼ିଦେଇ ଯଦି ମୁଁ ତାକୁ ମାରନ୍ତି, ତୋ ବାପ କି ଗାଁ ଲୋକେ ମୋ ହାତରେ ତତେ ଦଉଥିଲେ କି ? କନ୍ଧ କୁଳରେ ମାଡ଼ ଫେରାଇ ନେଲେ ଧାଙ୍ଗିଡ଼ୀ ଫେରିଯିବ ।

ବାଘୁଆର ପିଠି ଆଉଁସି ସୁନା କହିଲା, କେତେ କୋଳା ଫାଟିଛୁ । ତୋ ସାଙ୍ଗମାନେ ଯଦି ବରଗଛ ହୁଡ଼ାରୁ ବାହାରି ପୂର୍ଣ୍ଣିକୁ ଧରି ନ ଥାନ୍ତେ, ସେ ତତେ ଆହୁରି ମାରିଥାନ୍ତା । ମାରନ୍ତା ତା'ର ସାଙ୍ଗ ଯେ—

ମାରିଥାନ୍ତା ତ ମାରିଥାନ୍ତା । ତୋ' ଲାଗି ମୁଁ ଜୀବନ ଦେଇଥାନ୍ତି ।

ସୁନାର ମୁଣ୍ଡକୁ ଦୁଇ ହାତରେ ବାଘୁଆ ଟେକି ଧରିଲା । ପୁଣି କହିଲା, ସୁନା, ବୋଲ୍ ତ ସେଇ ଗୀତଟା ବୋଲ୍ ନା—

ଆମର ଗାଁ ଲୋକେ ତତେ ଧରିବାକୁ ଗୋଡ଼େଇଥିବେ । ପୂର୍ଣ୍ଣି ଯାଇ ନାଇକକୁ କହିବଣି । ମାରଗତା ହେଲେକା ସମସ୍ତେ ଆସି ମତେ ତୋ ପାଖରୁ ଛଡ଼ାଇ ନେଇଯିବେ । ଚାଲ ପଳେଇବା ଡୋଙ୍ଗର ଉପରକୁ ।

ଆରେ, କନାମ ଖାଁ ଏଠିକି କୋଶେ ବାଟ ହେବ । ଆମର ଗୀତ କାହାରକୁ ଶୁଭିବ ନାହିଁ । ତୁଇ ଗୋଟିଏ ଗୀତ ନ ବୋଲିଲେ ମୁଁ ଏଠୁ କୁଆଡ଼େ ଯିବନାହିଁ ।

ସୁନା ଗୀତ ବୋଲିଲା, ବାଘୁଆ ପାଳି ଧରିଲା, ଉଭୟ ଆତ୍ମହରା ହୋଇ-ଗଲେ । ଚାରିଆଡ଼େ ସବୁଜ ପ୍ରକୃତି, ଦୂରର ନେଳି ପାହାଡ଼ ଗୀତର ଲହରରେ ମୁଖରିତ ହେଲା ।

ଗୀତ ଶେଷ ହେଲା । ବାଘୁଆ ସୁନାକୁ ଆଲିଙ୍ଗନ କରି ତା'ର ମୁହଁରେ ବୋକ ଦେଲା । ସୁନା ବାଘୁଆର ବାହୁ ବନ୍ଧନରୁ ମୁକ୍ତ ହୋଇ କହିଲା, ବାଘୁଆ,

ମତେ ଘିଚି ଆଣିଲୁ, ଏବେ ଯିବା କୁଆଡ଼େ କହ । ତୋ'ର ଭଙ୍ଗା ଘରେ ରହିଲେ ମାଗତା ହେରିକା ଆସି ପୁଣି ଗୋଳମାଳ କରିବେ । ଯିବା କି ରେ ବାଘୁଆ ପାହାଡ଼ ସେପାରି ଜମଗିରି ଉପରକୁ ? କେହୁ ଜାଣିପାରିବେ ନାହିଁ । ଯିବା କି ?

ନାଇଁରେ, ଏତେ ଦୂରକୁ ଯିବା ନାହିଁ । ପାହାଡ଼ ସେପଟ ଝୋଲ କୂଳରେ ଗୋଟେ ଭଙ୍ଗା ଘର ଅଛି । ଟିରିପାଖେ ଡୋଙ୍ଗର, ସେଇଠି ରହିବା ।

ଗାଁ ଲୋକେ ଜାଣିବେ । ଖୋଜ ଖୋଜ ଯିବେ ।

ଭଲ ହେବ । ତୋ ବାପକୁ ଝୋଲ ଟଙ୍କା ଦେବି, ଗାଁ ଲୋକଙ୍କୁ ମଦ ପାଇଁ, ଖାଇବା ପାଇଁ ଟଙ୍କା ଦେବ, ପୁଢ଼ ରଖିଛୁ, ହାଣି ଖାଇବାକୁ ଦେବ ।

ସୁନା ବିସ୍ମୟରେ ତା ମୁହଁକୁ ଚାହିଁ ପଚାରିଲା, କାହିଁ ପାଇଲୁ ରେ ? ସାହୁକାରର ଖମ୍ବାରି ହେଲୁ କି ? କେଉଁ ସାହୁକାର ସେ ?

ବାଘୁଆର ମୁହଁ ଶୁଖିଗଲା । ନିଃସହାୟ ଆଖିରେ ସୁନାକୁ ଚାହିଁଲା । ଉତ୍ତର ଦେଇପାରିଲା ନାହିଁ ।

ସୁନା ବାଘୁଆର ହାତ ମୁଠାଇ ଧରି ପଚାରିଲା, କହ, କହ, ତୁନ ପଡ଼ିଲୁ କାହିଁକି । ସତେ ତୁ ଝୋଲ ଟଙ୍କା ରଖିଛୁ ।

ବାଘୁଆ ଅଟେଇ ଅଟେଇ କହିଲା' ରଖିଛୁ । ପୁଢ଼ ରଖିଛୁ । ତୋ ଲାଗି ଶାଢ଼ୀ ରଖିଛୁ । ସୁନାହାର ରଖିଛୁ । ତୋ ବାପର ଲାଗି ଲୁଗା ରଖିଛୁ ।

କଏ ଦେଲାରେ ? ଚୋରି କଲୁ କି ?

ମୁଁ ଚୋରି କରି ନାହିଁ । ସବୁ ମତେ ବୁଢ଼ିଆ ଡମ୍ବ ଦେଲା ।

ବୁଢ଼ି ବାରିକ ଦେଲା ? କାହିଁକି ? କେଉଁଠୁ ସେ ଆଣିଲା ? କହ, କହ, ତୁନ ହେଲୁ କାହିଁକି ? କହ ବାଘୁଆ । ମତେ ଡର ଲାଗୁଛିରେ ।

ଅସ୍ଥିର ହୋଇଉଠିଲା ।

ବାଘୁଆ କହିଲା, ତୁ ଡରୁଛୁ ନାହିଁ ନା ? ଚୋରି କରି ନାହିଁ । ବୁଦ୍ଧିଆ ମତେ ଡାକିଲା । ମୁଁ ତା ସାଥିରେ ଗଲି ଚାକୋଲ ଗୁଡ଼ା । ବନମାଳି ସାହୁକାର ଘରକୁ ବୁଦ୍ଧିଆ ଗଲା । ମୁଁ ଯାଇ ନାହିଁ । ଗଛମୂଳରେ ମୁଁ ରହିଲି । ସେ ଚୋରି କଲା । ମୁଁ ତା ସାଙ୍ଗରେ ଆସିଲି । ସବୁ ସେ ମତେ ଦେଲା କି ? ସେ ସବୁ ନେଲା । ମତେ ଅଳପ ଦେଇଛି ।

ତୁ ଚୋରି କରିନୁ ତ ?

ନା— ।

ପୋଲିସ୍ ଘର—

ବାଘୁଆ କହିଲା, ପୋଲିସ୍ ଯଦି ଧରିବ ମୁଁ ସତକଥା କହିବି । ବୁଦ୍ଧିଆ ତମ୍ଭୁ କହିବ ସେ ଚୋରି କରିଛି । ତାକୁ ସିନା ଶିକ୍ଷା ହେବ, ମୋ'ର କିସ ହେବ କି ? ବୁଦ୍ଧିଆ କହୁଛି ସେ ଶିକ୍ଷା ଦିବ । ହେଇ, ସେ ଧାଇଁ ଧାଇଁ ଆସୁଛି—

ବାଘୁଆ ଓ ସୁନା ବୁଦ୍ଧିଆ ଆସୁଥିବା ଦଗକୁ ଚାହିଁ ରହିଲେ । ବୁଦ୍ଧିଆ ଧଇଁସଇଁ ହୋଇ ପହଞ୍ଚିଲା । ସୂର୍ଯ୍ୟ ପାହାଡ଼ କଡ଼ରୁ ବୁଡ଼ି ଆସୁଥିଲେ ।

ବୁଦ୍ଧିଆ କହିଲା, କିରେ, ତମେ ଦହେଁ ଏଇଠି ଅଛ ? ଗାଁ ଲୋକେ ସବୁକଥା ଜାଣିଲେଣି । ହେ ସୁନା, ତୋ ବାପ ଜାନି ଆଉ ମାଗତା ବାପ ନାଇକ, ଗାଁଆର ସବୁ ଲୋକଙ୍କୁ ଧରି ଚାରିଆଡ଼େ ଖୋଜିଗଲେଣି । ଏଣେ ବି ଆସୁଛନ୍ତି । ତମେ ଦହେଁ ଏଇ ଡୋଙ୍ଗର କଡ଼େ କଡ଼େ ପଳାଅ । ହେ ବାଘୁଆ, ସେଇ ଖୋଲ କୂଳ ଭଙ୍ଗା ଘରକୁ ଯା—

ସୁନା କ'ଣ ପଚାରିବାକୁ ବସିଥିଲା । ତା'ର ମନକଥା ବୁଝିପାରି ବୁଦ୍ଧିଆ କହିଲା, ଡେରି କରନା । ସେମାନେ ଏଇ ବାଟରେ ଆସୁଛନ୍ତି । ମୁଁ ଆଗରେ ଆସିଲି । ପଳାଅ—

ବାଘୁଆ କହିଲା, ସୁନା କହୁଛି, ମତେ ଶିକ୍ଷା ହେବ ।

ବୁଢିଆ ବୁଝିଲା, ବାଘୁ ତ ଆଗରେ ସବୁକଥା କହୁଛି । ତାର ଭୟ ହେଲା, ସୁନା ଯଦି ବାଘୁ ସଙ୍ଗରେ ନ ଯାଇ ଫେରିଯାଏ, କିମ୍ବା ଗ୍ରାମ ଲୋକଙ୍କୁ ସବୁ ଫିଟାଇ କହେ, ତେବେ ତାର ଆଉ ରକ୍ଷା ନାହିଁ । ନିଶ୍ଚୟ ତାକୁ ପୋଲିସ ଧରିନେଇ ଶିକ୍ଷା କରେଇବ । ସେ ହସି ହସି କହିଲା, ତୋ'ର କାହିଁକି ଶିକ୍ଷାହେବ ? ତୁ କ'ଣ ଚୋରି କରିଛୁ ? ମୁଁ ଚୋରି କଲି । ମୋର ଯାହାକୁ ଇଚ୍ଛା ହେଲା, ତାକୁ ଜିନିଷ ଦେଲି । ପୋଲିସ ଯଦି ପଚାରେ ସତ କହିବ । ମୁଁ ଜେଲ ଯିବି । ତୋର କିସ୍ ହେବ ? ଉମ୍ବପିଲା ହୋଇ ଶିକ୍ଷା ଯିବାକୁ ଡରିବ ?

ବାଘୁ ଖୁସିହୋଇ ସୁନାକୁ କହିଲା, ଶୁଣିଲୁ ତ ସୁନା ? ବିଶ୍ୱାସ ହେଲା ?

ସୁନା କହିଲା, ହଁ । ଆରେ ବୁଢିଆ—

କ'ଣ କହୁଛୁ ? ବାଘୁକୁ ମୁଁ ଭଲପାଏ । ସେ ମୋର ପିଲାଦିନର ସାଙ୍ଗଟା । ତତେ କିଣା ମୁଁ ଭଲପାଏ ନାହିଁକି ସୁନା ? ତୁଇ କହ—

ସୁନା କୃତଜ୍ଞତା ପୂର୍ଣ୍ଣ ଆଖିରେ କହିଲା, ହଁ—।

ବୁଢିଆ ଶୁଣି କହିଲା, ଆଉ ମାଗତା, ତା'ର ବେକଟା କାଟିଦେବାକୁ ମୋ ମନହୁଏ । ନାଇକର ପୁଅ ବୋଲି ପିଲାଦିନୁ ସେ ମୋତେ କେତେ ମାରିଛି । ସେଥିଲାଗି ରେ ସୁନା, ବାଘୁପାଇଁ ତୋ ପାଇଁ ମୁଁ ଜେଲ ଘରେ ପଛେ ପଶିବି, ତତେ ମାଗତାର ମାଇପ କରେଇଦେବି ନାହିଁ ।

ସୁନା ଆଖି ଛଳଛଳ କରି କୃତଜ୍ଞତା ଜଣାଇଲା ।

ବୁଢିଆ ହସିହସି କହିଲା, ଏଇ, ପାଟି ଶୁଭୁଛି । ସେମାନେ ଆସୁଛନ୍ତି । ମୁଁ ଏବାଟେ ଯାଉଛି । ତମେ ସେବାଟେ ଯା—। ଡୋଙ୍ଗର କଡ଼େ କଡ଼େ । ବୁଝିଲୁ ? ସେଇ ଜଙ୍ଗଲକୁ—। ପଳାଅ—

ସୁନା ଓ ବାଘୁକୁ ଛାଡ଼ି ବୁଢିଆ ବାଜିକ ଟଲପରି ଛୁଟି ପଳାଇଲା । ପ୍ରଣୟୀ ଯୁଗଳ ତାର ଗତି ପଥକୁ ଅନାଇ ରହିଲେ । ଜଙ୍ଗଲ ଭିତରେ ସେ ଅଦୃଶ୍ୟ

ହେଲ । ବାପ୍ପା ଶୁଣିହୋଇ ପୁନା ହାତ ଧରି କହିଲ୍, ସେ ମୋର ପିଲାଦିନର ସାଙ୍ଗଟା । ମୋ ପାଇଁ ସେ ଶିକ୍ଷା ଦିବ । ଚାଲ ପୁନା, ଆମେ ସେଇ ଭଙ୍ଗା ଘରକୁ ପଳାଇବା ।

ପୁନା ମନ ମାନିଲା ନାହିଁ ବୁଝି ବାଣକର ଢଙ୍ଗରେ ସେ ଯେପରି କେଉଁ ଅଜଣା ବିପଦର ସୂଚନା ପାଇଲା । ତାର ମୁହଁ ଶୁଖିଗଲା । ବାପ୍ପାକୁ ଉତ୍ତର ନ ଦେଇ ସେ ତାର ପଛେ ପଛେ ଅରଣ୍ୟ ଭିତରେ ଚାଲିଲା ।

ପୋଲିସ ଥାନା । ଟେବୁଲ ଆଗରେ ହାତ ଯୋଡ଼ି ଠିଆ ହୋଇଛନ୍ତି ବନମାଳି ସାହୁକାର । ପାଖରେ ଠିଆ ହୋଇଛି ଜଣେ କନେଷ୍ଟବଲ । ଘର ଭିତରେ ଦୁଇତିନି ଜଣ ଓମ୍ପ ବସିଛନ୍ତି । ଟେବୁଲ୍ ଆରପାଖେ ଚଉକିରେ ବସିଛନ୍ତି ସବ୍-ଇନ୍‌ସପେକ୍‌ଟର (ମୁନ୍‌ସି) ବାବୁ । ସମସ୍ତ ହେବ ଏଗାର ।

ବନମାଳି କହିଲେ, ଆଜ୍ଞା, ମୋ ଇହାରଟା ଲେଖନ୍ତୁ । ମୋ ଘରୁ କାଲି ରାତିରେ ସବୁ ଚୋରି ହୋଇଯାଇଛି । ଦୟା କରନ୍ତୁ—

ମୁନ୍‌ସି ବାବୁ ମୁହଁ ଟେକି କହିଲେ, ରହ ସାହୁକାର । ଚୋରି ତ ଯାଇଛି, ମୁଁ କରିବ କ'ଣ ? କିଏ ଚୋରିକଲା ଦେଖିଛୁ ? ତମ ଲୋକଙ୍କ ଅଭ୍ୟାସ ମିଛରେ ଇହାର ଦେଇ ମଣିଷକୁ ହଇରାଣ କରିବ । ଖାଲିତିରେ ବଣ ଜଙ୍ଗଲ ପାହାଡ଼ ଡୋଙ୍ଗର ଖୋଜ ଖୋଜ, ଶେଷକୁ କିଛି ଫଳ ହେବ ନାହିଁ ।

ମିଛ ନୁହେଁ ମହାପ୍ରଭୁ ! ମୁଁ ରାୟଗଡ଼ା ଯାଇଥିଲି । ଦାକାଲ୍ ଗୁଡ଼ାରେ ଦୋ'ଘର କରିଛି—

ବେଶୀଗୁଡ଼ା ବକ ନାହିଁ, ଦୋ'ଘର କର କି ତିନିଘର କର । ଚୋରି କରିବାଟା କେହି ଦେଖିଛି କି ?

ଦେଖିଥିଲେ ଚୋରି କେମିତି ହେବ ମହାପ୍ରଭୁ ?

ନ ଦେଖିଲେ କେଣ୍ କେମିତ ଚଳିବ ସାସ୍ତୁକାର ? କୋଟ୍ ସର ବିଶ୍ୱାସ କରିବ କି ? ମୁଦାଲ ଫେଲ୍ ହେବ ସିନା । କାହା ଉପରେ ତମର ସନ୍ଦେହ ହେଉଛି ?

ଆଜ୍ଞା ମହାପ୍ରଭୁ, ବନମାଳି ଭାବିବାକୁ ଲାଗିଲେ ।

ମୁନ୍ସି କହିଲେ, ଆଛା ଭାବ କର କୁହ । ମୁଁ ଅନ୍ୟ କାମ କରେଁ ।

ଜମାନ୍ (କନେଷ୍ଟବଲ) ପୋଲିସ ଘାତରେ ହଲମ୍ କରି କହିଲା, ହଜୁର—

ମୁନ୍ସି ପଚାରିଲେ କ'ଣ ?

ଜମାନ୍ କହିଲା, ଦାହୁକାରେ କଥାଟା ଲେଖିନେଇ ସିନ୍ଦିଲ ଡସ୍‌ପୁଟ ଲେଟିଦେଲେ—

ମୁନ୍ସି ହସି ହସି କହିଲେ । ଆଛା, ସେକଥା ପରେ ଦେଖିବା । ସୁନାମଣି ଡମ୍ବ ହାଜର ହେି ?

ଜମାନ୍ ପାଟିକରି ଡାକିଲା, ସୁନାମଣି ଡମ୍ବ ।

ହାତଯୋଡ଼ି ସୁନାମଣି ଡମ୍ବ ପାଖକୁ ଆସିଲା । ଦୁଇଥର ଶିକ୍ଷା (ଜେଲ) ଭୋଗିବାରୁ ତାକୁ କ୍ରିମିନାଲ ଟ୍ରାଇବର ମେମ୍ବର (ସି-ଟି-ଏମ୍ ବା ସିଟାମ୍) କରାହୋଇଛି । ପ୍ରତିଦିନ ରାତି ଦ ୧୧ ଘଣ୍ଟା ଓ ଘ ୩ ଘଣ୍ଟାରେ ସବ ସିଟାମ୍‌ଙ୍କୁ ଥାନାରେ କିମ୍ବା କୌଣସି ନିଯୁକ୍ତ ଭଦ୍ରଲୋକ ଘରେ ହାଜିରା ଦେବାକୁ ପଡ଼େ । ଅନୁପସ୍ଥିତ ହେଲେ, କେଶ୍ କରି ସି. ଟି. ଆକ୍ଟ ଅନୁସାରେ ଜେଲଦଣ୍ଡ ଭୋଗିବାକୁ ପଡ଼େ ।

ମୁନ୍ସି ପଚାରିଲେ, କରେ, କାଲି ରାତିରେ ହାଜିରା ଦେବାକୁ ଆସିଲୁ ନାହିଁ ? ଦାର୍ଗିଲିକୁ (ପୋଲିସ୍ ଇନସ୍‌ପେକ୍ଟରଙ୍କୁ) ରିପୋର୍ଟ କରୁଛି ।

ନାଇଁ, ମହାପ୍ରଭୁ ! ରକ୍ଷାକର ମହାପ୍ରଭୁ ! ମୋ'ର ଗାଁ ଏଠିକି ଦଶ ମାଇଲ । ଚ'ଟା ଡୋଙ୍ଗର ପାର । ଆସୁଥିଲି, ରାତି ହେଲା, ଜଙ୍ଗଲ ଭିତରେ ଝମାମ୍‌ଝୋଲ (ନାଲ) ଛେକି ଦେଲା (ଅଟକାଇ ଦେଲା) ।

କୋରାପୁଟ ଜିଲ୍ଲାର ନଈ ନାଲ । ପାହାଡ଼ ପର୍ବତରେ କାହିଁ କେଉଁ ଅଜଣା ଥାନରେ ବର୍ଷା ହେଲେ ପାଣି ଗଡ଼ିଆସି ନାଲରେ ପଡ଼େ । ଉଞ୍ଚ ପାହାଡ଼ରୁ ପାଣି ଗଡ଼ିଆସି କାଳକ୍ରମେ ଦୁଇପାଖର ବଣ ମାଟି ଭାଙ୍ଗି ନାଲ ବା ଝୋଲ କରେ । ଆଖି ପାଇବ ନାହିଁ ଖଣ୍ଡି । ପାହାଡ଼ ଉପରେ ଠିଆହୋଇ ନାଲ ତଳକୁ ଚାହିଁଲେ ମୁଣ୍ଡ ବୁଲାଇ ଦିଏ । ଏପରି ଝୋଲ ବା ନାଲ କୋରାପୁଟ ଜିଲାରେ ଅଗଣନ । ପ୍ରାୟ ଝୋଲା ବା ନାଲ ଉଚ୍ଚ ପାହାଡ଼ରୁ ତଳ ଭୂଇଁକୁ ଗଡ଼ିଲା ବେଳେ କେତେ ଜଳପ୍ରପାତ ସୃଷ୍ଟି କରେ । ଜିଲାଟା ଯାକରେ ଛୋଟବଡ଼ ହୋଇ ଦୁଇଶ ଜଳପ୍ରପାତ ଅଛି ।

କାହିଁ କେଉଁ ଦୂର ପାହାଡ଼ରେ ବର୍ଷା ହେଲେ. ହଠାତ୍ ନଈ ନାଲରେ ପାଣି ପଡ଼େ । ସୁଅର ତୋଡ଼ରେ ହାଗ ମୁଣ୍ଡ ଦ'ଖଣ୍ଡ ହେବ । ଆଣୁ ଏ ପାଣିରେ ପଶି ୬୦ ହାତର ନାଲ ପାର ହେବା ଦୁଃସାଧ୍ୟ । ପଥୁରିଆ ନାଲ, ଡଙ୍ଗା କାଠୁଆ ପଡ଼େ ନାହିଁ । ବାଧ୍ୟହୋଇ ଝୋଲାର ଗୋଟିଏ ପାଖରେ ଅଟକି ରହିବାକୁ ପଡ଼େ । ପାଣିର ତୋଡ଼ ଖସିଲେ କମ୍ବା ପାଣି ଜମିଲେ ଲୋକେ ପଶି ନାଲ ପାର ହୁଅନ୍ତି । ବେଳେ ବେଳେ ଘୋର ଜଙ୍ଗଲ ଭିତରେ, ମାଳୁଆ ମଶା ପଲ ମଝିରେ ବସି ବସି ରାତି କାଟିବାକୁ ପଡ଼େ ।

ମୁନସି କହିଲେ, ଝୋଲା ଛେକିବା କଥା ଆଇନରେ ନାହିଁ । ଆଇନ୍ କହୁଛି ସିଟାମ୍‌ଗର୍ ହାଜର ହେଲେ ତାକୁ ଶିକ୍ଷା କରେଇବ । ଭିଙ୍ଗୁ ଡମ୍ବ କାହିଁ ।

ଭିଙ୍ଗୁ ଡମ୍ବ ହାତ ଯୋଡ଼ି ପଦାରୁ ଆସି ଆଗରେ ଠିଆହେଲା ।

କରେ, ତୋ'ର କ'ଣ ହେଲା ? ରୁ କାହିଁକି ଆସିଲୁ ନାହିଁ ?

କସ କରିବ ମାହାପ୍ରଭୁ, ପହରଦିନ ରାତିରୁ ମୋ ମାଇପ କଷ୍ଟ ପାଉଥିଲା । କାଲି ରାତିରେ ଅଣ୍ଡିରା ପିଲାଟେ ହୋଇଛି । ଏକୁଟିଆ ମଣିଷ । କେମିତା ଛାଡ଼ି ଆଇଥା ତୁଇ କହ ।

ସ୍ନେପ୍ ବେଣୀଗୁଡ଼ାଏ ବଢ଼ ନାହିଁ । ସିଂହାମ୍ ହେଇ ସାତଥର ଜେଲ ଗଲୁ, ତଥାପି ତୋ ବଦ୍‌ମାସି ଗୁଡ଼ିକା ନାହିଁ । ଛଅଥର ଛାଡ଼ିଦେଲ । କେବେ କହୁଛୁ, କାଇଲା ପଡ଼ିଲୁ (ବେମାର ହେଲ), କେବେ ତୋ'ର ମାଇପ ମରୁଛୁ, ପୁଣି କେତେ ମାଇପ ଜନମ କରୁଛୁ କରେ—?

କସ୍ କଶବ । ଅରେ କଚ ତୁଇ ମତେ ଶିକ୍ଷା କଗ୍ଧଉଛୁ ଆଉ ଗୋଟେ କଣ ମାଇପ ପଳାଉଛୁ । କ'ଣ ଖାଇ ରହିବ କ ? ମୁଁ ତ ଶିକ୍ଷା ଖଟିଲ । ଶିକ୍ଷା ବେଗି ଫେଶ ଆଉ ଗୋଟେ ଆଣିଲେ—

ଏମିତ କେଇଟା ଅଣିଲୁ, ନେଇଟା ଗଲେ ?

ତୁଇ ହିସାବ କର, ଯେତେ ଅର ଶିକ୍ଷା କରେଇଲୁ ସେତେଟା । ଲେଖି ଦେ, ଜେଲରେ ଅବ ଆଉ ଆସିବ ନାହିଁ ।

ହଁ, ସେଇଆ ଲେଖିଦେବ ।

କାଡ଼ାକା ଟିପୁ କନ୍ଧ ଆଗକୁ ଆସି ହାତ ଯୋଡ଼ି କହିଲ, ମୋ'ର ପୁଅ ଖାଇଦେଲେ ମାହାପ୍ରୁ—

କିଏ ଖାଇଲ ରେ ?

କେମିତ ଜାଣିବ ? ତନବରଷ ହେଲ— କିଏ ମୋ'ର ଶାଳ ଟୋକି ପଟେ ପୁଅ ନେଲ । ଗୋଡ଼ା (ଖୁବ୍ ବଡ଼) ଖୋଜ ଚଲୁଁ । ବସିନ୍ ପଦର ଡୋଙ୍ଗର ଉପରେ, ଗୋଟେ ପଥର ସନ୍ଧରେ ପୁଅର ମୁଣ୍ଡଟା ପଡ଼ିଥିଲ । ରକ୍ତ ପଡ଼ିଛୁ । ବସିନ୍ ପଦର ଡମ୍ବମାନେ ମାଶ ଖାଇଦେଲେ । ନାଇକକୁ ପଗ୍ଧର ।

ନାଇକ କହିଲ, ଖାଇଲେ ମାହାପ୍ରୁ ! ସଞ୍ଜ ବେଲକେ ମୋ'ର ଘରେ ଆଣି ମାଉଁସ ଦେଲେ । ମୁଁ ନ ଥିଲ । ମୋ ମାଇପ କହିଲ, କେଉଁଠୁ ଆଣିଲ ରେ ? ଡମ୍ବ ଯିଲେ କହିଲେ, ଡୋଙ୍ଗର ଉପରେ ବାଘ ମାଶ ପକେଇଥିଲ । ଟିପୁର ଟା ବୋଲି କେମିତ ଜାଣିବ ।

ମୁନ୍‌ସି ଲେଖିସାରି କହିଲେ, ତୁ ବି ସେଥିରେ ଅଛୁ । ସବୁଥର ଖସି ଯାଉନ୍ତୁ । ଏଥର ତତେ ଛାଡ଼ିବି ନାହିଁ ।

ନାଇକ କହିଲା, ତୋ'ର ଇଷ୍ଟ (ଇଚ୍ଛା) ଏକା ।

ଯଦ ବଣ୍ଟିବୁ, ଚୋର ଧରେଇ ଦେ ।

ଧରେଇ ଦେବ ମାହାପ୍ରଭୁ !

ବନମାଳୀ ସାହୁକାର ଆଗକୁ ଆସିଲେ ।

ମୁନ୍‌ସି କହିଲେ କହେ, କାହା ଉପରେ ତମର ସନ୍ଦେହ ହେଉଛି ?

ବନମାଳୀ କହିଲେ, କେମିତି ମିଛକଥା କହିବି ? ଦାକାଲଗୁଡ଼ା ଘରେ ମୋ'ର ଶଳା ଗୋବିନ୍ଦ ଏକା ଥିଲା । ଚଇତୁ ଡମ୍ବୁ ଓ ସୁନ୍ଦୁ ଡମ୍ବ ବିହେଁ ମୋର ଝିମ୍ପାଣ । ସେମାନେ ବି ସେଇଠି ଥିଲେ । ଗତ ରାତିରେ ମୋର ବିଷମକଟକ ଘରେ କିଏ କବାଟ ଖଡ଼ ଖଡ଼ କଲା । ପଡ଼ା ଲୋକ ଦମଚେ ଉଠିଲେ । ଚୋର ପଳେଇଲା । ମୋ'ର ସ୍ତ୍ରୀ ଗୋବିନ୍ଦ ପାଖକୁ ଖବର ପଠେଇଲେ । ପର ରାତିରେ ସୁନ୍ଦୁ ଓ ଚଇତୁ ବିଷମକଟକ ଆସି ରାତିରେ ଜଗିଲେ । ସେଇ ରାତିରେ ମୋର ଦାକଲାଗୁଡ଼ା ଘରୁ ଚୋରି ହେଲା ।

କ'ଣ ଚୋରି ହୋଇଛି ?

ଘରର ତାଲା ଖୋଲି, ଘର ଭିତରେ ଥିବା ପେଡ଼ି ଭାଙ୍ଗି ନଗଦ ଦ'ଶ ଟଙ୍କା, ଗୋଟାଏ ସୁନା ହାର ଅନ୍ଦାଜ ଚାରିତୋଳା ଓଜନର, ଦ'ଟା ନୂଆ ଖଦି, ଗୋଟାଏ ରଙ୍ଗିନ୍ ନୂଆଶାଢ଼ୀ । ଗୁହାଳ ଘରୁ ଗୋଟାଏ ବୁଢ଼ା ବି ଚୋରି ଯାଇଛି ।

ମୁନ୍‌ସି ସବୁ କଥା ମନଦେଇ ଶୁଣିଲେ ଓ ଲେଖିଲେ । ମୁଣ୍ଡର ବାଳ ଓଟାରି ରାଗି ରାଗି କହିଲେ, ତମର ସେଇ ମଦୁଆ ଶଳା ଗୋବିନ୍ଦର ଏ କାମ ।

ବନମାଳୀ କହିଲେ, ମଦପାଣି ଖାଇ ଲକ୍ଷେ ଟଙ୍କାର ସମ୍ପତ୍ତି ଯେ ଉଡ଼େଇଦେଲା, ସେ ଭଉଣୀର ଦ୍ୱାର ଆଉ ଶାର୍ଡ଼ୀ ପ୍ରେଶ କରବ ? ଗାଈ ପ୍ରେଶ କରବ ? ନାଇଁ ମୂନ୍‌ସି ବାବୁ, ଗୋବନ୍ଦ ପ୍ରେଶ କରବ ନାହିଁ ।

ତେବେ—ତେବେ, ସୁନ୍ଦ୍ର ଆଉ ଚଇରୁ—

ବନମାଳୀ କହିଲେ, ସେ ବର୍ଷେ ସବୁସାବ୍ ଷେମକଟକରେ ମୋ ଦ୍ୱରେ ପହରା ଦେଉଥିଲେ ।

ମୂନ୍‌ସି କହିଲେ; ଆଚ୍ଛା, ମୁଁ ସ୍ଥାନ ତଦନ୍ତ କରବ । କାଲି ସକାଳୁ ଯିବ ।

ହଠାତ୍ ଗୋଳମାଳ ଶୁଭିଲା ପଦାରେ । ମୁନ୍‌ସିଙ୍କ ଛଡ଼ା ସମସ୍ତେ ଥାନାଘର ପଦାକୁ ଗଲେ । ମୁନ୍‌ସି କାମରେ ମନଦେଲେ । ପାଞ୍ଚ ମିନଟ୍ ପରେ ଜଣେ ଜମାନ ଅସ୍ଥିର ହୋଇ ଘରେ ପଶିଲା ।

ଜମାନ କହିଲା, ମର୍ଡ଼ର ହଜୁର !

ମର୍ଡ଼ର ! ମୁନସିଙ୍କ ହାତରୁ କଲମ ଖସିପଡ଼ିଲା । ସେ ଉଠି ଠିଆହେଲେ ।

ଜମାନ୍ କହିଲା, ଆସାମୀ ଖୁଣୀର ମୁଣ୍ଡଧର ହାଜର ! କହୁଛି, ଫରେଷ୍ଟ ଜମାନ ଖୋଲା ପାଖରେ ତା ଧାଙ୍ଗଡ଼ୀକୁ ଧରିଲା । ଆସାମୀ ଖବର ପାଇ ଜମାନର ମୁଣ୍ଡ କାଟିଲା !

ମୁନ୍‌ସି ବିଚଳିତ ହୋଇ ଆଦେଶ ଦେଲେ—ଆସାମୀଙ୍କୁ ସଙ୍ଗେ ସଙ୍ଗେ ଆରେଷ୍ଟ କର, ହାତକଡ଼ି ଲଗାଅ । ସେ ଖୁଣୀ ।

ଦୁଇଜଣ ସିପାହୀ ସଙ୍ଗୀନ ଲଗା ବନ୍ଧୁକ ଟେକି ଖୁଣୀ ଆସାମୀକୁ ଧରିବାକୁ ଅଗ୍ରସର ହେଲେ । ଆଗନ୍ତୁକ ଆସାମୀର ହାତରେ ଗାମୁଛାରେ ଗୁଡ଼ା ହୋଇଥିବା କଟା-ମୁଣ୍ଡ । ଶୁଖିଲା ରକ୍ତ ଜୁଡ଼ୁଜୁଡ଼ୁ । ତା ପଛରେ ଆଠ ଦଶଜଣ କନ୍ଧ ଲୋକ ଓ ତନି ଚାରିଜଣ କନ୍ଧ ଲଳନା । ଜଣକର ଖୋଲା ବକ୍ଷରେ ଉତାଣି ପିଲାଟିଏ

ଲାଗିଛି । କ୍ଷୀର ଖାଉଛି ଓ କୁନ୍ଥୁକୁନ୍ଥୁ କରି ଗୁହାରିଛି । ଦରବୃଦ୍ଧୀ ସେ, ହେବ ପରି ମୁବକ ଆଚାର୍ଯ୍ୟର ଜନନୀ । ବାଇଆଣୀ ପରି ଏଣେତେଣେ ଚାହୁଁଛି । ଫୁରୁଫୁରୁ ମୁଣ୍ଡ । ଆଖିରୁ ଲୁହଧାର ଗଡ଼ିପଡ଼ୁଛି ।

ସାରକା ପେଙ୍କୁ କନ୍ଧର ଘର । ପୁଣି ଗାଁ ମଝିରେ । ସମସ୍ତ ଅପରାହ୍ନ । ପେଙ୍କୁର ସ୍ତ୍ରୀ ପୁଲକି ଗେଡ଼ା (ନାଳ)ରୁ ଦୁଇମାଠିଆ ପାଣି ଆଣି ଘରେ ରଖିଲା । ଟିକିଏ ଦମ୍ ନେଇ ଶୁଖିଲା କାଠ ସଜାଡ଼ି ରଖିଲା । ମନରେ ସବୁର ନାହିଁ । ପେଙ୍କୁର ଧାଙ୍ଗଡ଼ୀ ହେବାକୁ ସିନା ଆଗରୁ ଏତେ ଖୁସି ହେଉଥିଲା; ଧାଙ୍ଗଡ଼ୀ ହୋଇ ଆସିଲା ପରେ ତା ମନର ସବୁର ଭାଙ୍ଗିଲା ।

ପେଙ୍କୁ ଖମ୍ଭାରି ହୋଇଛି । ରାତି ପାହିଲେ ପେଜ୍ ମଧଏ ପିଇ ପେଙ୍କୁ କାମ କରିବାକୁ ବଡ଼ଗୁଡ଼ା ଗ୍ରାମକୁ ଚାଲିଯାଏଁ । ଗୁରୁମୂର୍ତ୍ତି ଘରେ କବଜମ୍ଭୁଛି । କାମ କରି ରାତିକୁ ଫେରେ । କଅଣ କରିବ, ଖମ୍ଭାରି ହେଇଚି, ମୁଣ୍ଡ ବିକିଚି । ପୁଣି ଗାଁରୁ ବଡ଼ଗୁଡ଼ା ଗଲେ ଦୁଇଟା ନାଳ ପାରି । ଗୋଟାଏ ଡୋଙ୍ଗର ଉପରେ ଚଢ଼ି ଯିବାକୁ ପଡେ । ବର୍ଷାକାଳି ଯଦି ନାଳରେ ପାଣି ପଡ଼େ କି ଡୋଙ୍ଗର କଡ଼ ଜଙ୍ଗଲରେ ବାଘ ମାଡେ ପେଙ୍କୁ କରିବ କଅଣ ?

ପେଙ୍କୁ ଖମ୍ଭାରି, ଛଅ ବର୍ଷ ଖମ୍ଭାରି ହୋଇ ରହିବ । ଓଃ, ଛ ବର୍ଷ ! ପେଙ୍କୁ ସଙ୍ଗେ ମନ ଆନନ୍ଦରେ ଆଗପରି ବଣ ଜଙ୍ଗଲରେ ବୁଲିପାରିବ ନାହିଁ ।

ପୁଲକି ମନରେ ଆସିଲା ବିଦ୍ରୋହ, ପରବଶ ହେବାର ବିଦ୍ରୋହ । ପେଙ୍କୁ ଯଦି ସେ ବାହା ହୋଇ ନ ଥାନ୍ତା, ଯଦି ମାଗତାର ଧାଙ୍ଗଡ଼ୀ ହୋଇଥାନ୍ତା; ମାଗତା ତ ପରର ଖମ୍ଭାରି ହୁଅନ୍ତା ନାହିଁ । ବଂଶ ଭାଇ ବୋଲି ଗାଁ ଲୋକେ ଯଦି ବାଦ କରନ୍ତେ, ମାଗତା ଜୋରିମାନା ଓ ଝୋଳଭାତ ଦେଇ-ପାରନ୍ତା ।

ପୁଲକର ଯୌବନ ପୁଲକ ଛୁଟିଲା । ମାଗତା ଭଲ, ପୁଞ୍ଜି ଖରାପ । ସେ ଖମ୍ବାଖ । ଗୁରୁମୂର୍ତ୍ତି ସାହୁକାର ଘରେ ଖଟି ଖଟି ପୁଣି, ବଣ ଜଙ୍ଗଲ ଡୋଙ୍ଗର ନାଲ ପାଣହୋଇ ଆସି କ୍ଲାନ୍ତ ହୋଇ ଘରରେ ଶୋଇପଡ଼େ । ପୁଲକ ଗୁହିଁ ବସେ । ମନର ସବୁଗ ମନରେ ମରେ । ଅସ୍ଥିର ହୋଇଛୁ, ପଦେ କଥା କହିବାକୁ ବେଳ ପାଏ ନାହିଁ ।

ପୁଲକ ଅଣ୍ଟା ସଳଖି ଠିଆହେଲା । ଦୋକୁ ଚାହିଁଲା, ଧାଇଁ ଧାଇଁ ଲତା ଆସୁଛି । ଲତା ପାଖକୁ ଆସିଲା । ହସ ହସ ହୋଇ କହିଲା, ଏ ପୁଲକ, ଗାଁ ଲୋକେ ଫେରି ଆଇଲେ । ବାପ୍ପା ଓ ପୁନାକୁ ପାଇଲେ ନାହିଁ ।

ଲତାର ଆନନ୍ଦ କହିଲେ ନ ସରେ । ନାଇକ ନୋକାର ରଗ ମରୁଛି । ଆଉ ପୁନା ତାର କେହି ହୋଇପାରିବ ନାହିଁ । ଲତା ହିଁ ହେବ ତା'ର ବୋହୂ, ମାଗତାର ଘରଣୀ । ଲତାର ବାପ ଭଲ୍‌କା ବାପୁର ଆତ୍ମା (ଡୁମା)ର ମନକାମନା ପୂର୍ଣ୍ଣ ହେବ । ସେ ମୁକ୍ତ ହେବ ।

ପୁଲକ ପଚାରିଲା, ସେମାନେ ଗଲେ କୁଆଡ଼େ ? କାଲିଠୁଁ ଗଲେଣି—

ସେଣେ ଯାଆନ୍ତୁ । ମାଗତା ଆଉ କସ୍ କରିବ ? ମଦ ଖାଇ ଟାଙ୍ଗି ଧରି ବୁଲୁଛି, ଆଉ ପାଟି କରୁଛି, ବାପ୍ପାକୁ ଦେଖିଲେ ତାର ମୁଣ୍ଡ କାଟିବ । ମୁଁ କହିଲି, ହେ ମାଗତା, ପୁନା ପୁନା ହୋଇ ମରିବୁ କି ? ଚୁଲ, ଚୁଲ, ଆମେ ମିଶି ପଳେଇବା ।

କସ କହିଲା ମାଗତା ?

କସ୍ ଆଉ କହିବ ? ଟାଙ୍ଗି ଧରି ମତେ ମାରିବାକୁ ଅଇଲା । ମୁଁ ପଳେଇ ଆଇଲି । ହେ ପୁଲକ, ତୁ ଥରେ ମାଗତାକୁ କହି ଯା, ଜାକର ଠାକୁରାଣୀ ସବୁ ଦେଖୁଛି । ନାଇଁ କଲେ ସେ ଖାଇଦେବ । ମାଗତା ମତେ ଘରକୁ ନେଉ ।

ପୁଲକ ହିଂସାରେ ଭିତରେ ଭିତରେ ଜଳିଗଲା । ମୁହଁ ଫଣ ଫଣ କରି କହିଲା, ମୋର କସ୍ ଥାଏରେ ଲତା, ମୁଁ କାହିଁକି ତା'କୁ କହିବ ? ମତେ ସେ ମାରିଦେବ । ତୁ ଯା ।

ଲତା ଦୁଃଖିତ ହୋଇ, ମୁହଁ ଶୁଖାଇ ଅଭିମାନରେ କହିଲା, ପୁଲକ, ତୁଇ ମୋ'ର ପିଲାଦିନର ସାଙ୍ଗଟା ନୁହଁ କି ? ତତେ କହିବି ନାହିଁ ତ ଆଉ କାହାକୁ କହିବି ? ତୁ ମୋ ଲାଗି ମାଗତାକୁ କହ ସେ ତୋ'ର କଥା ମାନିବ ।

ମାନୁ କି ନ ମାନୁ ମାଗତାକୁ ଝୁରି ତୁ ମରୁଛୁ କାହିଁକି ? ଆଉ କ'ଣ କେହି ଧାଙ୍ଗଡ଼ା ନାହିଁ ? କାହାର ହେଲେ ହାତ ଧରି ଚାଲିଯାଉନୁ । ନାଇକର ବୋହୂ ହେବାକୁ ତୋର ମନ, ନାଇକର ତ ମନ ନାହିଁ ତତେ ବୋହୂ କରିବ ।

ପୁଲକ କହିଲା, ଆଉ ଟୋକେ ଧାଙ୍ଗଡ଼ାର ହାତ ଧରି ଗଲେ ମୋ ବାପର ଆତ୍ମା କାନ୍ଦିବ ନାହିଁକି ? ସେ ମତେ ଅତି ଭଲ ପାଉଥିଲା ରେ । ସେଇଥିପାଇଁ ମାଗତାର ଧାଙ୍ଗଡ଼ୀ ହେବାକୁ ମୁଁ ଚାହୁଁଛି । ନାଇକର ବୋହୂ ହେବାକୁ ମୁଁ ସକ ସକ ନୁହେଁ । ମୋ ବାପର ଆତ୍ମାକୁ ଶାନ୍ତି ଦେବାକୁ ।

ପୁଲକ ଲତାର ଆଖିରେ ଲୁହ ଦେଖିଲା । ତଥାପି ସେ କହିଲା, ଲତା ମୁଁ ସତ କହୁଛି । ତୁ ଭଲ ବୁଝ୍ କି ମନ୍ଦ ବୁଝ୍ । ପରର ମଥାରେ ମୁଁ ପଶିବି ନାହିଁ । ନାଇକ ରାଗିବ, ତୁ ଯା ଯା ।

ପୁଲକ ଘରେ ପଶି ତାଟି ଦେଲା । ଲତା ମୁହୂର୍ତ୍ତେ ତା ଘର ଆଗରେ ଠିଆ ହୋଇ ଭାବିଲା । ଗୁରୁଆଡ଼କୁ ଚାହିଁ ମନକୁ ମନ କହିଲା, ମୋ'ର କଥା କେହି ଶୁଣିବେ ନାହିଁ । ମୋର କେହି ନାହିଁ । ମାଗତା ମତେ ହାଣିବ କହୁଛି । ହାଣି ଦେଉ । ପୁଲକ କହୁଛି ନାଇକର ବୋହୂ ହେବାକୁ ମୁଁ କାନ୍ଦୁଛି । ହେ ଜାକରି, ତୁଇ ଏକା ଜାଣୁ । ନାଇକର ବୋହୂ ହେବାକୁ ମୁଁ ଚାହୁଁ ନାହିଁ । ବାପ ତତେ ସାକ୍ଷୀ ରଖି ମତେ ମାଗତାର ମାଇପ କରିବାକୁ କହିଥିଲା । ତୁଇ ଜାଣୁ ଜାକରି, ମୁଁ ମାଗତାର ମାଇପ, ଯିବି ପୁଣି ତା ପାଖକୁ । ମାରିବ କହୁଛି, ମାରୁ ।

ଆଖିର ଲୁହ ସେ ପୋଛିଲା ନାହିଁ । ପୁଲକର ଘର ଆଗରୁ ପ୍ରସ୍ଥାନ କଲା ।

ପୁଲକ ଚାବି କବାଟ ଖୋଲି ଘରୁ ବାହାରିଲା । ମନକୁ ହସି ମନକୁ ମନ କହୁଥିଲା, ମାଗତାର ଧନ ଲତାକୁ କରିଛୁ ପାଗଳ । ଲତା ହେବ କାଇକର ବୋହୂ, ଆଉ ମୁଁ ଥିବ ଖମ୍ବାରି ପୁଙ୍ଗିର ମାଲିକ । ବନଗଡ ପୁଙ୍ଗିକୁ ବସିଥିବ ? ହାଃ, ଏଇ, ମାଗତା ଆସୁଛି ।

ପୁଲକ ଗୁନ୍ଧି ରହିଲା । ମାଗତା ମଦ ନିଶାରେ ଟଳି ଟଳି ହାତରେ ଟାଙ୍ଗି ଧରି ପହଞ୍ଚିଲା । ପୁଲକକୁ ଦେଖି ସେ ପଚାରିଲା, ଲତା କାହିଁ ଗଲା ପୁଲକ ?

ପୁଲକ ହସି ହସି ପଚାରିଲା, ସେ ଯଦି ଯାଇ ତା ଠାରେ ତୋର କି କାମ ଅଛି ମୋତେ ଆଗ କହତ ।

ତାକୁ ମୁଁ ହାଣିଦେବ । ସବୁବେଳେ ମୋ ପଛେ ପଛେ ଲାଗିଛି ।

ମୁଁ ଜାଣେରେ ମାଗତା, ତୁଇ ମୋ'ର ବଂଶ ଭାଇଟା । ଆ, ସେଇଠିକେ ପିଇବେ । ବସିଯା ଟିକେ । ସବୁ କଥା ତତେ କହିବ । ଲତାକୁ ତୁ ଜାଣିନୁରେ । ଆ, ମାଗତା ।

ମାଗତାର ହାତ ଧରି ପୁଲକ ଘର ଭିତରକୁ ନେଲା । ଚାବି ଖୋଲା ରହିଲା । ପୁଲକ ନାଲି ତୁମ୍ବାରେ ପେଜ ଦେଲା । ମାଗତା ପିଇଲା । ପୁଲକ ବସିଥିଲା, ମାଗତାର କ୍ଳାନ୍ତ ଦୂର ହେଲା । ପୁଲକ ଚାବି ଅଳପ ଆଉଯାଇ ମାଗତା ପାଖରେ ବସିଲା । ହସ ହସ ହୋଇ କହିଲା, ସୁନାକୁ ବାପ୍ପା ଘିଚନେଇ ପଳେଇଲା । ଜାଣୁକି ମାଗତା, କାହାର ଶିକ୍ଷାରେ ସୁନା ଗଲା ? ଏଇ ଲତାର ଶିକ୍ଷାରେ ।

ମାଗତା ପଚାରିଲା, ଲତାର ?

ପୁଲକ କହିଲା, ହଁ, ସବୁ ସେ ଜାଣେ । ଆଗରୁ ସବୁ ଠିକ୍ କରିଥିଲା । ଲତା ମନେକରିଛି ସୁନା ପଳାଇଲେ ତୁଇ ତାକୁ ଧାଙ୍ଗଡ଼ୀ କରିବୁ । ଆଉ ତ ଭେଦ ନାହିଁ ।

ମାଗତା ଦାନ୍ତ ଉଗଡ଼ାଇଲା । ପାଖରେ ପଡ଼ିଥିବା ଟାଙ୍ଗୀ ଧରି ଆଜି ତରଚି କହିଲା, ଧାଙ୍ଗଡ଼ୀ କରିବ, ଧାଙ୍ଗଡ଼ୀ ! ଲତାର ମୁଣ୍ଡ ହାଣିବ । ଝୋଲରେ ପକାଇବ । ହଁ, ଲତାର ମୁଣ୍ଡ ହାଣିବ । ସେଇ ଏକା ସୁନାକୁ ଉଗେଇ ଦେଲା ।

ପୁଲକ ମାଗତାର ହାତରୁ ଧୀରେ ଧୀରେ ଟାଙ୍ଗୀ ଟାଣିନେଲା । ମାଗତାର ଅତି ପାଖକୁ ଲଗି ଆସି ତା'ର ମୁହଁକୁ ପିପାସାକୁଳ ଆଖିରେ ଚାହିଁ କହିଲା, ଲତାର ମୁଣ୍ଡ ସିନା ହାଣିବୁ, ହେଲେ, ସୁନାକୁ ତ ପାଇବୁ ନାହିଁ । ବାବୁଙ୍କର ସାଥିରେ ସୁନା ପଳେଇଛି, କେତେ ଦୂରକୁ, ବଙ୍ଗୋମ !

ଖଙ୍ଗୋମ ? ସୁନା ଆଉ ଫେରିବ ନାହିଁ ? ପୁଲକ, ସେ ଯାଉ, ତା'କୁ ଜାକର ଖାଉ, ତାକୁ ବାଘ ଖାଉ, ତାକୁ ମୁଁ ଧାଙ୍ଗଡ଼ୀ କରିବ ନାହିଁ । ମୁଁ ମଦ ରାନ୍ଧିବ ଆଉ ପିଇବ । ଭଲ ହେବ । ଲତାକୁ—

ମାରିବୁ ନାହିଁ ମାଗତା, ସେ ନିଜେ ମରିବ ।

ନିଜେ ମରିବ ? ଝୋଲ ଭିତରକୁ ଡେଇଁବ ? ବାଘ ଆଗକୁ ଯିବ ?

ପୁଲକ ତା'ର ଦୁଇ ହାତ ଧରିଲା । ବହୁତ ଆଖିରେ ଚାହିଁଲା । କହିଲା, ମାଗତା—

କ'ଣ ପୁଲକ ?

ମୁଁ ତୋ ସାଥିରେ ଯିବି !

ମୋ ସାଥିରେ ଯିବୁ ? ଏଁ—ତୁ ପୁର୍ଣ୍ଣିର ଧାଙ୍ଗଡ଼ୀ, ତୁଇ ମୋର ବଣ ଭଉଣୀ—

ପୁର୍ଣ୍ଣି ଖମ୍ବାର ହୋଇଛି । ସେ ସାହୁକାର ଘରେ ରହୁଛି । ମୁଁ ତା ପାଖରେ ରହିବି ନାହିଁ । ତୁଇ ଯଦି ନ ନେଉ, କେଣେ ହେଲେ ପଳେଇବି । ତୁଇ ମୋ'ର ବଣ ଭାଇ ସିନା, ମୋର ଭାଇ ତ ନହୁ । ତୋର ପଇସା ଅଛି, ଗାଁ ଲୋକଙ୍କୁ ଜୋଗମାନ ଦେବୁ । ପୁର୍ଣ୍ଣିର ଝୋଲ ଟଙ୍କା ଫେରାଇଦେବୁ । ଭୋଜି ଦେବୁ ସବୁଙ୍କୁ ।

ହଁ, ଟଙ୍କା ଅଛି । ହେଲେ, ପୁର୍ଣ୍ଣି ମତେ ମାରିବ ନାହିଁ କ ?

ପୁର୍ଣ୍ଣି ମାରିବ ତତେ ? ତୁଇ ନାଇକର ପୁଅ, ତୋର କିଏ କ'ଣ କରିବ ?

ମାଗତା ଭାବିଲା । ପୁଲକକୁ ଚାହିଁଲା । ପୁଲକର ହାତ ଧରିଲା । ମନର ଆଦିମ ପ୍ରକୃତି ପୁଲକ ଆଡ଼କୁ ତାକୁ ଠେଲିଦେଲା । ସୁନା ପଳେଇଛି, ଲତାକୁ ସେ ଚାହେଁ ନାହିଁ । ପୁଲକ ଭଲ, ପୁର୍ଣ୍ଣି ଖମ୍ବାର । ତା ପାଖରେ ପୁଲକ ରହିବ ନାହିଁ । ପୁଲକକୁ ସେ ଧାଙ୍ଗଡ଼ୀ କରିବ । ପୁଲକକୁ ସାଥିରେ ନେଇ ଡୋଙ୍ଗରକୁ ପଳାଇବ ।

ସତେ ପୁଲକ, ଯିବା ?

ପୁଲକ ଠିଆହେଲା । ଉତ୍ତର ଦେଲା ନାହିଁ ।

ମାଗତା ଉଠିଲା । ପୁଲକର ହାତ ଧରି କହିଲା ଚାଲ । ତୁଇ ଆଗେ ଆଗେ ଚାଲ । ମୁଁ ତୋର ପଛେ ପଛେ ଯିବି । ଡୋଙ୍ଗରକୁ ଯିବା ନାହିଁରେ ପୁଲକ । ରାତିରେ ବାଘ ଖାଇବ । ଜଙ୍ଗଲ ବାଟରେ ମୋର ମାଉସୀ ଘରକୁ ପଳାଇବା । ହାଣିଦେବେ । ନୋହେ ଡୋଙ୍ଗର ଡେଙ୍ଗେଲେ, ଆର ଡୋଙ୍ଗର ଉପରେ । ଚାଲ ପୁଲକ, ତୁଇ ମୋର ଧାଙ୍ଗଡ଼ୀ ହେବୁ । ମୁଁ ହେବି ତୋ'ର ଅଣ୍ଡିରା ।

ପୁଲକ ପୁଲକିତ ହୋଇ ମାଗତାର ଛାତି ଉପରେ ମୁହଁ ରଖିଲା । ମାଗତା ତା'ର ମୁଣ୍ଡ ଆଉଁସିଲା । ଧୀରେ ଧୀରେ ପୁର୍ଣ୍ଣିର ଘର ଭିତରୁ ବାହାରି ଗଲେ ।

ପୁଲକର ନାମ ଧରି ଡାକି ଡାକି ପୁର୍ଣ୍ଣି ଆସିଲା । ଦେହସାରା ଲହୁ ଲୁହାଣ । ମୁଣ୍ଡରେ ବନ୍ଧା ହୋଇଛି ଖଣ୍ଡେ ପଟି । ହାତରେ ବାଡ଼ି ଧରି ଟେଙ୍କେଇ ଟେଙ୍କେଇ ଚାଲୁଛି ।

ଏ ପୁଲକ ପୁଲକ, ପୁଲକ—

ଘର ଭିତରକୁ ଯାଇ ପୁଙ୍ଗି ତାକୁ ଖୋଜିଲା । ପୁଲକ ନାହିଁ । ନାଉ ତୁମ୍ବା ପଡ଼ିଛି । କାହାର ଟାଙ୍ଗି ଖଣ୍ଡେ ଥୁଆ ହୋଇଛି । କ୍ଲାନ୍ତ ହୋଇ କାନ୍ଥକୁ ଆଉଜି ବସିଲା । ଦେହ ଝୋଲ ମାରୁଯାଉଥାଏ । ପୁଣି ଡାକିଲା ପୁଙ୍ଗି, ପୁଲକ—ଇ, ପୁଲକ—ଇ—

ପୁଲକର ଜବାବ ନାହିଁ । ଘର ଆଗରେ ଯାଉଥିଲା ପୁଲକର ମା । ସେ ଘର ଭିତରକୁ ଆସିଲା । ପଚାରିଲା, କ'ଣ ହେଲାରେ ପୁଙ୍ଗି, ପୁଲକ ନାହିଁ କି ?

ପୁଙ୍ଗି ମୁଣ୍ଡ ହଲାଇ ନାହିଁ କଲା । କହିଲା, ମା, ପାଣି କି ପେଜ ଟିକେ ଦେ ।

ପୁଲକର ମା ହାଣ୍ଡିରୁ ପେଜ (ଦଇଡ) ଆଣି ଦେଲା । ପୁଙ୍ଗି ଢକ ଢକ ପିଇଦେଲା ।

ପୁଲକର ମା ପଚାରିଲା, କିଏ ତତେ ମାରିଲାକରେ ପୁଙ୍ଗି ?

ମାରି ନାହିଁ ମା । ସାହୁକାରେ ଘର ତୋଳା ହେଉଛି । କାନ୍ଥ ଉପରକୁ ପଥର ନେଉଥିଲି । ଗୋଡ଼ ଖସିଗଲା । ପଡ଼ିଗଲି ତଳେ । ମୁଣ୍ଡ ଫାଟିଗଲା । ସାହୁକାର ଭଲ ମଣିଷ, ମୁଣ୍ଡରେ କନା ବନ୍ଧେଇଲା । ଖଢଆ ଦେଲା । ଦି ଦିନ ସିଲ (ଛୁଟି) ଦେଇଛି । ଚାରିଅଣା ପଇସା ଦେଇଛି ।

ହଉ, ସାହୁକାର ଭଲ ମଣିଷ । ହେ ପୁଙ୍ଗି, ତୁ ଶୋଇଥା'ରେ । ମୁଁ ପୁଲକକୁ ଡାକୁଛି । କାଠ, ପତର, କି ପାଣି ଲାଗି କେଉଁଠିକି ଯାଇଥିବ । ତୁ ଶୋଇପଡ—

ପୁଲକର ମା ଘାସବୁଣା ଚଟେଇ ଖଣ୍ଡେ ଦଉଡ଼ିଆ ଖଟରେ ପକାଇ ଦେଲା । ପୁଙ୍ଗିର ହାତ ଧରି ଉଠାଇ ତାକୁ ଖଟରେ ଶୁଆଇଲା । ଘରର ତାଟି ଆଉଜାଇ ଆଣିଲା । ଘରୁ ବାହାରକୁ ଆସି ଏଣେତେଣେ ଚାହିଁ ମନକୁ କହିହେଲା, ପୁଲକ ଗଲା କୁଆଡ଼େ ? ଦେଖେଁ—

ପାହାଡତଳ ନିପଟ ଜଙ୍ଗଲ ଭିତରେ ଗୋଟାଏ ଗଛକୁ ଆଉଜି ବୁଢ଼ିଆ ଡମ୍ବ ବସିଛି । ଦୂରେଇ କରି ଠିଆ ହୋଇଛନ୍ତି, ସୁନ୍ଦରୁ ଓ ଚଇତୁ । ବେଳ ଦ୍ୱିପ୍ରହର ପାଖରେ ଥିଆ ହୋଇଛି ମଦହାଣ୍ଡି ।

ବୁଢ଼ିଆ ପଚାରିଲା, ସାହୁକାର ବି ସାଥିରେ ଆସୁଛି କି ସୁନ୍ଦରୁ ?

ସୁନ୍ଦରୁ କହିଲା, ଏକା ସାହୁକାର ? ମୁନ୍‌ସି ସଙ୍ଗରେ ଦାକାଲଗୁଡ଼ାର ଗାଁ ଲୋକେ, ସାହୁକାର ବନମାଳିର ଶଳା ଗୋବିନ୍ଦ, ଦୁଇଜଣ ଜମାନ୍‌ବି ଆସୁଛନ୍ତି । ସାହୁକାର ତତେ ସନ୍ଦେହ କରୁଛି ।

ବୁଢ଼ି ଡମ୍ବ ଭାବିଲା, ପଳେଇ ଗଲେ ନିସ୍ତାର ନାହିଁ । ମୁନ୍‌ସି ତା କଥା ଭଲକରି ଜାଣେ ।

ବୁଢ଼ି କହିଲା, ସାହୁକାରର ଯେଉଁ ପୁଡ଼ିକୁ ବାଘୁଆ ଜଙ୍ଗଲ ଭିତରେ ବାନ୍ଧି ରଖିଥିଲା, ତା'କୁ ତେମେ ମାରି ଖାଇଲ । ପୋଲିସ୍ କ'ଣ ତମକୁ ଛାଡ଼ିବ ଭାବିଛ ?

ଚଇତୁ କହିଲା, ତୁଇ କହିଲାକୁ ସିନା ଆମେ ତାହା କଲୁଁ ।

ବୁଢ଼ି ପଚାରିଲା, ମୁଣ୍ଡ ରଖିଲ କେଉଁଠି ?

ଚଇତୁ କହିଲା, ପଥର ଖୋଲରେ । ତୋ'ର କହିଲା ପରି ବାଘୁଆର ଟାଙ୍ଗିଟା ଶେଷ କରି ସେଇ ପାଖରେ ପକେଇ ଦେଇ ଆସିଛୁ ।

ଭଲ କାମ କରିଛୁ । ମୁନ୍‌ସି ଆଗରେ କହିବୁ ବାଘୁଆ ତୋ ଆଗରେ କହିଥିଲା, ଗୁରୁମୂର୍ତ୍ତି ସାହୁକାର ଟଙ୍କା ନ ଦେଲେ ତ ନାହିଁ, ସୁନାର ଲାଗି ସେ ଖୁନ କରିବ । କହିବୁ ନା ଚଇତୁ ?

କହିବ ।

ଶୁଣ୍ ସୁନ୍ଦରୁ, ତୁ କହିବୁ, ବାଘୁଆ କହିଥିଲା ଦୁନାକୁ ଭିଟେଇବ । ତୁ ପଚାରିଲୁ, ଖୋଲିଟଙ୍କା ତା'ର ବାପକୁ କେମିତି ଦେବୁ ? ସେ କହିଲା ତତେ, ଟଙ୍କା, ଲୁଗା, ଚୁଡ଼ି, ସବୁ ସେ ରଖିଛି ।

ସୁନ୍ଦ କହିଲ' ମୁନ୍‌ସି ଘର ପଚାରେ, ବାଘୁଆ କେଉଁଠୁ ଆଣିଲ ?

ବୁଢି ଉପଦେଶ ଦେଲା, ତୁ କହିବୁ, ବାସ୍ତା ସେ କଥା କହିଲା ନାହିଁ ।

ସୁନ୍ଦ ଓ ଚଇରୁ ବୁଢିଆର କଥା ମାନିଲେ । ମୁନ୍‌ସି ଆଗରେ ଏତିକି କହିଲେ ତ କିଛି କ୍ଷତି ନାହିଁ । ବଡ଼ ପରିଶ୍ରମରେ ସେମାନେ ଟଙ୍କାରୁ ଭାଗ ପାଇଛନ୍ତି । ଆଉ ଧନକୁ ଆଉ ଦିନେ ଅଛି । ବୁଢିଆର କଥା ଶୁଣିଲେ ତାଙ୍କର ବିପଦ ନାହିଁ ।

ବୁଢି ପଚାରିଲା, ମୋ କଥା ମନେରହିଲା ?

ସୁନ୍ଦ କହିଲା,—ହଁ ।

ବୁଢି କହିଲା, ତେମେ ଦୁହେଁ ମୋ ପାଖରୁ ଚାଲିଯାଅ । ମୁନ୍‌ସି ପାଖକୁ ଏକାଠି ଯିବନାହିଁ । ସୁନ୍ଦ, ତୁ ଆଗ ଯିବୁ, ଚଇରୁ ତୁ ପରେ ଯିବୁ ।

ସୁନ୍ଦ ଓ ଚଇରୁ ଚାଲିଗଲେ । ବୁଢିଆ ଉଠି ଠିଆହେଲା । ଚାରିଆଡ଼କୁ ଚାହିଁଲା । ଗଛ ଗହଳି ଡ଼'ଙ୍ଗର କରି ଯେଉଁ ଚଲା ବାଟଟି ଉଠିପଡ଼ି ବଙ୍କେଇ ଗାଁ ଆଡ଼କୁ ଗଡ଼ିଛି, ସେହି ବାଟରେ ଦୁଇଜଣ କିଏ ଆସୁଥିଲା ପରି ମନେ ହେଲା । ବୁଢିଆ ନଇଁପଡ଼ି ଏଣିକି ତେଣିକି ଚାହିଁଲା, ଦେଖିଲା । ଖୁସି ହେଲା, ମାଗତା ପୁଲକର ହାତ ଧରି ଆସୁଅଛି ।

ପୁଲକ ଓ ମାଗତା ସେହି ବାଟରେ ଯାଉଁଣୁ ଆଗରେ ବୁଢିଆଙ୍କୁ ଦେଖି ଚମକି ଠିଆ ହେଲେ । ବୁଢିଆ ହସି ହସି ପାଖକୁ ଗଲା । ପଚାରିଲା, କୁଆଡ଼େ ଯାଉଛୁ ମାଗତା ?

ମାଗତା କହିଲା, ମୁଁ ପୁଲକକୁ ଘିଚି ନେଉଛି । ସେ ପୁଙ୍ଗି ପାଖେ ରହିବ ନାହିଁ । ପୁଙ୍ଗି ଖମ୍ବାଶ ହେଲା । ପୁଲକ ମୋର ଧାଙ୍ଗଡ଼ା ହେବ । ପୁଙ୍ଗିର ଖୋଳା-ଟଙ୍କା ମୁଁ ଫେରେଇ ଦେବି । ଆଉ କ'ଣ ?

ବୁଢ଼ିଆ ତାର କଥା ସମର୍ଥନ କରି କହିଲା, ଅରେ ନାଇକର ପୁଅ ମାଗତା, ଭଲ କରୁଛୁ । ପୁଲକ ଭଲ କରୁଛୁ । ପୁଲକ ଭଲ ଧାଙ୍ଗଡ଼ୀଟେ । ମୁଁ କହିପିଲି ହେଇ ଥାଇଥ ତ କେବଠୁଁ ପୁଲକକୁ ଘିଚି ନେଇଯାଇଥ । ହେଲେ ମାଗତା ପୁଙ୍ଗି ଜାଣିବ ତ ତତେ ହାଣିଦେବ ନାହିଁ କି ? ତାର ସାଥିରେ ଲଢ଼ିଲେ ପାରିବୁ କି ?

ମାଗତା ନାଃସନ୍ତ୍ୱାସ୍ୟ ଆଖିରେ ପୁଲକକୁ ଚାହିଁଲା ।

ପୁଲକ ଉତ୍ତେଜିତ ହୋଇ କହିଲା, ନାଇକର ପୁଅକୁ ହାଣିବ ପୁଙ୍ଗି କମ୍ପାର ? ମା ଗତା ତାକୁ ଟଙ୍କା ଦେବ । ମାଗତାର କଣ ଟଙ୍କା ନାହିଁକି ?

ବୁଢ଼ି କହିଲା, ପୁଲକ ସତ କହୁଛୁ । ତେବେ ହେ ପୁଲକ, ମାଗତା ତୋ'ର କଣ ଖୁଇଟା ସେ—

ମାଗତା କହିଲା, ମୁଁ କୋରଯାନା ଦେବି, ଗାଁ ଲୋକଙ୍କୁ ଖାଇବାକୁ ଦେବି । କଣ ଖୁଇ ହେଲେ ଜାସ ହେଲା ?

ପୁଲକ କହିଲା, ହିଁ କଥାଟେ କହିଲୁ ତ । ଥୋପୁକା ହୃଷ୍ଟ କପଳ ଥୋପୁକା ମିଙ୍ଗିକୁ ଘିଚିନେଲା । ସେମାନେ ପୁଣି ଧାଙ୍ଗଡ଼ା ଧାଙ୍ଗଡ଼ୀ ହୋଇ ଘର କରୁଛନ୍ତି ।

ବୁଢ଼ି ସମ୍ମତ ଜଣାଇ କହିଲା, ସତକଥା କହିଲୁ । ଯା ଯା—

ମାଗତା ଓ ପୁଲକ ଆଗକୁ ଚାହିଁଲେ । ବୁଢ଼ିଆ ପଛରୁ ଡାକି କହିଲା, ସେଣେ ଯା ନାହିଁରେ ବାପ—

ମାଗତା ଚମକି ଠିଆହେଲା ।

ବୁଢ଼ି ପାଖକୁ ଯାଇ କହିଲା, ହଁରେ ମାଗତା, ମୁଁ ସେଣେ ଯାଉଥିଲି । ସେଇ ପାହାଡ଼ତଳ ଝୋଲରୁ ଡରିକରି ପଲେ କଅଁଧ ଲୁଚି ପଳେଇଲେ । ମାଙ୍କଡ଼ ଖେଞ୍ଚିଲେ । ତରିକରି ଏଇ ଗଛ ଉପରେ ମୁଁ ଚଢ଼ି କେତେବେଳୁ ବସିଥିଲି । ତମକୁ ଦେଖି ଓହ୍ଲାଇଲି ।

ମାଗତା ଭୟରେ ଡାକିଲ, ପୂଲକି—।

ପୂଲକ ତାର ହାତ ଧରି କହିଲ, ବାଘକୁ ଡରୁଛୁ ତୁଇ କାହିଁକି ? ତୋର ହାତରେ ଠାଙ୍ଗି ଅଛି, ବାଘ କଣ କରିବ ?

ନାଇଁ ପୂଲକ, ବାଘ ଖାଇଦେବ ।

ପୂଲକ ମାଗତା ହାତରୁ ଠାଙ୍ଗି ଟାଣିନେଇ କହିଲ, ଦେ, ମତେ ଠାଙ୍ଗି ଦେ । ଆ ମୋର ପଛରେ । ବାଘ ଆଇବତ ମୁଁ ତାକୁ ହାଣିବି । ତୁଇ ଦେଖିବୁ ଚାଲ—

ନାଇଁ ପୂଲକ—

ବୁଢ଼ି କହିଲ, ଶୁଣ ପୂଲକି । ଆରେ, ତୋର ମନ ମାଗତାଠି ତ ମାଗତାର ମନ ତୋଠି । ସଜ । ବଣ ଜଙ୍ଗଲକୁ କ ବାଘର ମୁହଁକୁ ଯିବ କାହିଁକ ? ହେ ମାଗତା, ତୁଇ ପୂଲକକୁ ନଜର ଘରକୁ ନେଇ ଯା । ରଖ ତାକୁ ଧାଙ୍ଗଡ଼ୀ କରି । ନାଇକ ପଚାରିଲେ ସେଇଆ କହ । ପୂର୍ଣ୍ଣି ଆସିଲେ, ତାକୁ ଟଙ୍କା ଦେଇଦେବୁ । ସୁନାକୁ ତ ବାଘ ନେଲ । ଲତାକୁ ତୋ'ର ବାପ ଚାହେଁ ନାହିଁ । ପୂଲକକୁ ତୋର ବାପ ନାଇକ ଭଲ ପାଏ ରେ ।

ପୂଲକ ଆଗ୍ରହରେ ବୁଢ଼ିଆକୁ ଅନେଇଲ । ବୁଢ଼ିଆ ବୁଝିଲ ତା'ର କଥା ପୂଲକର ମନକୁ ପାଇଛି । ସେ କହିଲ, କେତେଦିନ ତଳେ ନାଇକ ମତେ କହୁଥିଲା, ହେ ବାରିକ, ପୂଲକ ଯଦି ମୋ'ର ବଂଶର ଝିଅ ହୋଇ ନ ଥାନ୍ତା, ମାଗତାର ଲାଗି ତାକୁ ମୁଁ ଆଣିଥାନ୍ତି । ମାଗତା ଯିନା ସୁନାକୁ ଚାହୁଁଛି, ହେଲେ ସୁନା କ, ପୂଲକ ଲାଗି ହେବକ ରେ ? ମୁଁ ଚୁପ ପଡ଼ିଲି । କସ୍ ଆଉ କହନ୍ତି । ମାଗତା ତ ସୁନାର ପଛରେ ଗୋଡ଼ାଇଛି । ସୁନା ତ ଗଲା, ମାଗତା ଚାହିଁଲା ପୂଲକକୁ । ଭଲ ହେବ ପୂଲକ, ନାଇକ ମଙ୍ଗିବ ।

ବୁଢ଼ିଆ ଚୁପ ହେଲା । ମାଗତା ଓ ପୂଲକ ବୁଢ଼ିଆ କଥା ଭାବିଲେ, ବାରିକ ଭଲ କଥା କହୁଛି ତ !

ପୂଲକ ପଗ୍ଭରଲ, ହେ ବାଉଳ, କସ୍ ତେବେ କହୁଛୁ ତୁଇ ?

ତମର ଭଲକୁ ମୁଁ କହୁଛୁ । ତୁ ପୂର୍ଣ୍ଣି ଘରକୁ ଫେରଯା । ରହ ଆଉ ଦୁଇ ଗ୍ଭରଦନ । ମନର କଥା କାହାକୁ କହବୁ ନାହିଁ । ମୁଁ ନାଇକଙ୍କୁ ସବୁ କଥା କହବ ମୋ'ର୍ କଥାରୁ ସେ ବାହାର ହେବ ନାହିଁରେ ପୂଲକ, ମୁଁ ଗାଆଁର ବାଉଳ ନୁହେଁ କ ? ନାଇକ ମର୍ଜିଲେ, ଆଉ ଭାବନା କ'ଣ ? ପୂର୍ଣ୍ଣି କଣ କରବ ?

ମାଗତା କହଲ, ସତ ଏକା । ଦନ ଗ୍ଭରଟା ପୂର୍ଣ୍ଣି ପାଖରେ ରହ ପୂଲକ, ନାଇକ ମର୍ଜିଲେ ମାଗତା ତଟେ ଧାଙ୍ଗଡ଼ୀ କର ତା ଘରକୁ ନେବ । ମତେ କ'ଣ ଦେବୁରେ ପୂଲକ ? ତୁ ମାଗତାର ମାଇପ ହେବୁ, ନାଇକର ବୋହୂ ହେବୁ, ନା ? ଭୁଲବୁ ନାହିଁ ତ ?

ପୂଲକ ହସିଲ । କହଲ, ଦେବରେ ବାଉଳ, ତୁଇ ବଞ୍ଚଥିବା ଯାକେ ଦେଉଥିବ ।

ବେଶ୍ ତୁଇ ଘରକୁ ଫେରଯା ପୂଲକ । ମାଗତା, ତୁଇ ରହ ମୋ ପାଖରେ । ତୋତେ ସାଙ୍ଗରେ ନେଇ ମୁଁ ନାଇକ ଆଉ ଦଶାର ପାଖକୁ ଯିବ । ସବୁ ଠିକ ହୋଇଯିବ । ପୂଲକ, ତୁଇ ଯା, ଅଜ ଏକା ଜାକର ପାଖରେ ଦ'ଟା କୁକୁଡ଼ା ଦେ । ମନର କଥା ମନରେ ରଖ । ବୁଝିଲୁ ?

ପୂଲକ ସବୁ ବୁଝିଲ । ବାଉଳ ଉପରେ ଖୁସି ହେଲ । ଭାବଲ, ନାଇକର ବୋହୂ ହେଲେ ବାଉଳକୁ ଟଙ୍କା ଦେବ, ଲୁଗା ଦେବ, ପୁଣି ନିତ ଦେବ ଭାତ । ଟାଙ୍ଗିଟା ମାଗତା ହାତକୁ ଦେଇ, ଆନନ୍ଦରେ ପୂଲକ ଫେରଲ । ନାଇକର ବୋହୂ ସେ ହେବ । ପୂର୍ଣ୍ଣିକୁ ଯିନା ଦନେ ଭଲ ପାଉଥିଲ, ପୂର୍ଣ୍ଣିର ଦେହରେ ବଲ ଅଛୁ, ସେ ଭଲ ପିଲ, କଲୁ ପୂର୍ଣ୍ଣି ଖମ୍ବାର ହେଲ । ପୂଲକ ହେଲ ଏକୁଟିଆ ।

ପୂଲକ ଗହନ ବନର ଗଛ ଗହଳ ତଳେ ଛପି ଗଲ ।

ବୁଢ଼ିଆ ମାଗତାର କାନ୍ଧରେ ହାତ ପକାଇ କହିଲା, ବସ୍ ଏଇଠି ମାଗତା ।

ଚାଲ ପିବା ବୁଢ଼ିଆ, ବାଘ ଆସିବ ଘର—

ବାଘ ଢୋଙ୍ଗର ସେପାଖକୁ ଚାଲିଗଲାଣି । ତୁଇ ବସ ମୋ' ପାଖରେ । ତତେ କେତେ କଥା କହିବି । ତୁଇ ମୋର ପିଲା ଦିନର ସାଙ୍ଗ । ତୋ ବାପର ପରେ ତୁଇ ହେବୁ ଗାଁର ନାଇକ । ମୁଁ ହେବି ତୋ'ର ବାରିକ । ମୋ'ର କଥା ତୁଇ ଶୁଣିବୁ ତ ?

ମାଗତା ବୁଢ଼ିଆର ପାଖରେ ବସିଲା । ବୁଢ଼ିଆ ତାକୁ ମଦ ଦେଲା । ମାଗତା ପିଇଲା, ବୁଢ଼ିଆ ମଧ୍ୟ ପିଇଲା ।

କଥାଟେ ପଚାରିବି ସତ କହିବୁ ନା ମାଗତା ?

କଣ୍ କଥା ?

ତୁଇ ସୁନାକୁ ଧାଙ୍ଗଡ଼ୀ କରିବୁ କି ଲଡାକୁ କି ପୂଲକକୁ କରିବୁ । କାହାଠି ତୋ'ର ମନ ?

ମାଗତା କହିଲା, ସୁନାକୁ ବାପା ନେଲା । ସୁନା ମତେ ଚାହେଁ ନାହିଁ । ଲଡା ମତେ ଚାହେଁ । ମୁଁ ତାକୁ ଚାହେଁ ନା । ବାପ କହିଲା, ଲଡାର ସାଥିରେ ମିଶିବ ନାହିଁ । ପୂଲକକୁ ମୁଁ ଚାହିଁଥିଲି । ସେ କହିଲା ସେ ହେବ ପୁର୍ଗିର ମାଇପ । ହେଲା ତ । ପୁର୍ଗି ହେଲା ଖମ୍ବାର । ପୂଲକ ତାକୁ ଚାହେଁ ନାହିଁ । କହୁଛି, ମୋ'ର ଘରକୁ ଆସିବ । କହୁଚ, ହେ ମାଗତା, ଘିଚ ନେ ମତେ । ମୁଁ କହିଲି, ଚାଲ୍—

ବୁଢ଼ିଆ ଗୁନ ଗୁନ କହିଲା, ମାଗତା, ସୁନାକୁ ମାଇପ କରି ନେବୁ ନା ? ବାପା କାନ୍ଧ ତଳେ ଠକି ନେବ ? ତୁଇ ନାଇକର ପୁଅ, ପୁଣି ମୁଁ ତୋ'ର ବାରିକ । ପିଲାଦିନର ସାଙ୍ଗ । ତା ହାତରୁ ସୁନାକୁ ଆଣି ମୁଁ ତୋ ହାତରେ ଦେବି ।

ଏଁ—?

ଯାହା କହୁଚୁ ସତ କଥା ।

ମତେ ବାପା ମାରଦେବ ନାହିଁକ ?

ସୁନା ହେବ ତୋ'ର ଅଉ, ବାପା ଶିକ୍ଷା ପାଇ ଜେଲରେ ରହିବ ।

କପର ଏହା ହେବ ?

ହେବ କଥଣରେ, ସବୁ ହୋଇସାରଚୁ । ତୋ'ର ପାଇଁ ଆଗରୁ ମୁଁ ସବୁ ଠିକ୍ କର ରଖିଚୁ । ମୋ ନାଇକର ପୁଅକୁ ବାପା ଠକିବ କ ?

ବୁଢ଼ିଆ ତାର ଚତୁରଲ ଫନ୍ଦୀ କଥା ମାଗତାର କାନ ପାଖରେ ଗୁନ ଗୁନ କହିଲା । ମାଗତା ଖୁସି ହୋଇ ବୁଢ଼ିଆକୁ କୁଣ୍ଢାଇ ଧରିଲା । ବୁଢ଼ିଆ ପୁଣି ତା'ର କାନ ପାଖରେ ମନ କଥା କହିଲା । ମାଗତା ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

ବୁଢ଼ି ପଚାରିଲା, ହେଲା ତ ? ବେଶ୍ କଅଣ କହିବୁ ମୁନସି ଆଗରେ ?

ମାଗତା କହିଲା, କହିବ, ବଢରେ ତୁଇ ଆଉ ମୁଇ କ୍ୱାଆଦ ଶିକାର କରିବାକୁ ଝୋଲ ପାଖରେ ଜଗିଥିଲୁ । କଏ ଦୁଇ ଦନ ଜଣ ଆସିଲେ ସେ ବାଟରେ । ଜଣେ ପଟେ ପୁଟୁ ଧରିଥିଲା । ଦ'ଟନଜଣ ଆଗରେ ଚାଲିଗଲେ । ପଛରେ ଆଉ ଜଣେ ଆସିଲା । ତୁଇ ଆଉ ମୁଁ ତା ପାଖକୁ ଗଲୁ—

ଆଉ କଅଣ କହିବାକୁ ହେବ । ମାଗତା ଭୁଲିଗଲା । ସେ ଗୁନ ରହିଲା ।

ଗୁନ ରହିଲୁ ଯେ ।

ଭୁଲିଗଲି ବାରକ ।

ଶୁଣ, ମୁଇଁ ବାରକ ତାକୁ ଧରିଲି । ତୁଇ ନାଇକର ପୁଅ ମୋ ପାଖକୁ ଗଲୁ । ସେଇ ଟ୍ରେର ଲୋକଟା ଏଇ ବାପାକନ୍ଧ । ତା କାନ୍ଧରେ କେତେ ଲୁଗା ପଡ଼ିଥିଲା, କାନରେ କେତେ କଅଣ ବାନ୍ଧିଥିଲା । ବୁଝିଲୁ କ ?

ହଁ ବୁଝିଲି । ପୁଣି କହୁଚ, ଆମେ ତାକୁ ପଗ୍ୱରଲୁ, ସେ କଚ୍ଛ କହିଲା ନାହିଁ । ବାଲକ ହାତରୁ ହାତ ଟାଣିନେଇ ପଳେଇଲା । ଏଇଆ କହିବାକୁ ଶିଖାଇଲୁ ତ ବାଳକ ? ମନ୍ରେ ଭୁଲିଯିବ ନା ? ବାପ୍ପା ଘ୍ରେର ହେବ, ବାପ୍ପାକୁ ମୂନ୍ସି ବାନ୍ଧି ନେବ । ଶିକ୍ଷା କରାଇବ । ସୁନା ହେବ ମୋର ଧାଙ୍ଗଡ଼ୀ । ନୁହେଁ କି ବାଳକ ? ପୂର୍ଣ୍ଣି ସଙ୍ଗରେ ପୁଲକ ଥାଉ ।

ବୁଢ଼ି ବାଳକ ମାଗତା ପିଠି ଘ୍ୱପଡ଼ି କହିଲା, ସାବାସ୍ । ତୁଇ ମୋର ନାଇକର ପୁଅ, କାଲି ପୁଣି ନାଇକ ହେବୁ । ମୁଁ ହେବି ତୋର ବାଳକ । ତୋ ପାଇଁ ମୁଁ ସବୁ ସୁବିଧା କରିଦେବି । ମୁଁ କ'ଣ କହୁଛି ଶୁଣ । ମନେରଖ । ମୁନ୍ସି ଆଗରେ କହିବୁ, କୋଟ ଘରେ କହିବୁ । ବାପ୍ପାକୁ ଶିକ୍ଷା କରାଇବା । ସୁନା ଭଲ ଝିଅଟେରେ ମାଗତା, ସେ ତୋର ଧାଙ୍ଗଡ଼ୀ ହେବ ।

କଣ କହିବ ନାଇକ ?

କହିବୁ ଆମେ ଦହେଁ ତା ପଛରେ ଗୋଡ଼େଇଲୁ । ବାପ୍ପା ଖୋଲ ସେ ପାଖେ ଡୋଙ୍ଗର କଡ଼ରେ ଲୁଚିଗଲା । ତାକୁ ଖୋଜ ଖୋଜ ପାଇଲୁ ନାହିଁ ।

ମାଗତା ବୁଢ଼ିଆର କହିବା ମତେ ସବୁ କଥା ଆବୃତ କଲା । ବୁଢ଼ିଆ ବାରମ୍ବାର ତାକୁ ଶିଖାଇଲା । ଖୁସି ହୋଇ ମାଗତାର ପିଠିରେ ହାତ ମାରି କହିଲା, ବେଶ୍, ମନେ ରଖିଥା ମାଗତା । ଏତକ କହିବୁ । ମୁଁ ବି କହିବି ।

ଡୋଙ୍ଗର କଡ଼ରେ ଅଗ୍ନାଅଗ୍ନି ବଣ । ତାର ଭିତରେ ଡୋଙ୍ଗରକୁ ଗୁଡ଼େଇ ହୋଇ ଗୋଟିଏ ଝୋଲ୍ । ତଳର ପଥର ମାଳ ଉପରେ ଝରଝର କୁଳୁକୁଳୁ ହୋଇ ଝରଣାଟି ବହିଯାଉଛି । ସେଇ ଝରକୂଲରୁ ଟିକିଏ ଘ୍ରଞ୍ଚ ଗୋଟାଏ ବଡ଼ ପଥରକୁ ଲଗି ଭଙ୍ଗା କୁଡ଼ିଆ । କୁଡ଼ିଆ ଆଗରେ, ଝୋଲକୂଳ ପଥର ଗଛମୂଳରେ ବସିଛନ୍ତି ସୁନା ଓ ବାପ୍ପା ।

ସୁନା ପିନ୍ଧିଛି ଖଣ୍ଡେ ନାଲି ଶାଢ଼ୀ । ବେକ ଉପରୁ ଓହ୍ଳାଇ ପଡ଼ିଛି ଲମ୍ବ ସୁନାହାର । ଛାତି ଉପରେ ଦୋହଲୁଛି ପଦକ । ବେକରେ ପୁଣି କେତେ ରଙ୍ଗର କାଚମାଳି ଓ ପୋହଳା । କଡ଼ାତେଲ ଲଗି ମୁଣ୍ଡ ଦିଶୁଛି ଚକ୍ ଚକ୍ । ବାଳ ଉପରେ ଖୋସା ହୋଇଛି ଫୁଲ ।

ବାସୁ ବସିଛି ତା' ପାଖରେ । ପିନ୍ଧିଛି ଖଣ୍ଡେ ଧୋବ ଫର ଫର ଲୁଗା ।

ବାସୁ ସୁନାର କାନ୍ଧରେ ହାତ ପକାଇଲା । ତା'ର ମୁଣ୍ଡକୁ ଛାତି ଆଡ଼କୁ ଟାଣିନେଇ ଗେଲ କଲା । କେତେ ଆନନ୍ଦ କେତେ ଫୁର୍ତ୍ତି ତା ମନରେ, ସୁନା ଆଜି ତାର ହୋଇଛି । ଗରିବ ହେଲେ ମଧ୍ୟ ଜାକର ଠାକୁରାଣୀ ଦୟାରୁ ସେ ସୁନାକୁ ପାଇଛି । ମାଗିତା ହାରିଛି । ମାଗିତା ଆଉ ସୁନା ଆଡ଼କୁ ଅନାଇ ପାରିବ ନାହିଁ ।

ସୁନାର ମନରେ ସେମିତି ଆନନ୍ଦ । ବାସୁ ତାକୁ ପିନ୍ଧି ଅଣିଛି । ଶାଢ଼ୀ ସୁନାହାର ଦେଇଛି । ବାହାଘର ତ ସରିଲା । ଏଥର ଝୋଲି ଟଙ୍କା, ଗାଁ ଲୋକଙ୍କୁ ଭୋଜି, ନାଚ, ଗୀତ, ପୁଣି ପ୍ରଥା ଅନୁସାରେ ସାମାନ୍ୟ କେତେକ ଆଉ ବିଧି କର୍ମ । ବାସୁ ଟଙ୍କା ରଖିଛି । ବୁଢ଼ି ଡମ୍ବ ପୁଣି ତା ପାଇଁ ରଖିଛି ପୁଡ଼ା ।

ଭଲ ସାଙ୍ଗଟେ ବୁଢ଼ି ଡମ୍ବ ।

ବାସୁ କହିଲା, ଗୀତ ବୋଲ ସୁନା ।

ତୁଇ ବୋଲ ଆଗ ।

ନାଇଁ ତୁଇ ବୋଲ । ଆମର ପାଟି ଶୁଣିଲେ ବାଟ ଧରି ତୋ'ର ବୋପା, ନାଇକ, ଆଉ ଗ୍ରାମଲୋକେ ଆସିବେ । ଆସିଲେ ସିନା ଝୋଲି ଟଙ୍କା ଦେବ । ପୁଣି ଫେରିଯିବା ଗାଁକୁ । ଏଇ ଜଙ୍ଗଲ ମଝିରେ ବାଘଭାଲୁ ଭିତରେ କେତେଦିନ ଆଉ ରହିବା ?

ବୁଢ଼ିଆ ବାଉକ ମୋ ବାପକୁ ଆଉ ଗ୍ରାମଲୋକଙ୍କୁ ଖବର ଦେଇଥିବ । ସେମାନେ ଆସୁଥିବେ । ବେଳ ମୁଣ୍ଡ ଉପରକୁ ଉଠିଲାଣି । ଗୀତ ବୋଲିବାକୁ ମନ ଡାକୁ ନାହିଁ ।

ଚାଲ ତେବେ ଜଙ୍ଗଲ ଭିତରେ ବୁଲିବା ।

ସୁନାର ହାତ ଧରି ବାସ୍ତା ଉଠିଲା । କାହାର ପାଟି ଶୁଭିଲା ଦୂରରୁ ବନ ଗହନ ସେ ପାଖରୁ । ସୁନା କହିଲା ରହ ବାସ୍ତା, ସେମାନେ ଆସୁଛନ୍ତି । ଆଉ କୁଆଡ଼େ ଯିବା ନାହିଁ । ଗ୍ରାମ ଲୋକେ ଆସିବେ । ଆମକୁ ନ ଦେଖି ପୁଣି ଜଙ୍ଗଲ ଭିତରେ ଖୋଜି ଖୋଜି ହାଇରାଣ ହେବେ । ହସି ହସିକା ପୁଣି ସେ କହିଲା, ପିଠିକୁ ପଥର ପରି ଟାଣ କରିବୁ ହେ ବାସ୍ତା, ମୋ'ର ଭାଇ, ପୁଣି ଗାଁ ଟୋକାଏ ତତେ ଆଜି ଛାଡ଼ିବେ ନାହିଁ । ତୋ' ପିଠିରେ ଆଜି କେତେ ମାଡ଼ ବସିବ ।

ମାଡ଼କୁ ଡରେ କି ସୁନା ? ତୋ ଲାଗି ମୋ ପିଠିକୁ ମୁଁ ପଥର କରିବି ।

କୋଳାହଳ ପାଖେଇ ଆସିଲା । ସୁନା ଓ ବାସ୍ତା ଚାରିଆଡ଼କୁ ଚାହିଁଲେ । ସୁନା ଖୁସିହୋଇ ବାସ୍ତାକୁ କୁଣ୍ଢାଇ ଧରିଲା । ବାସ୍ତା ତା'ର ମୁଣ୍ଡରେ ମୁଣ୍ଡ ଲଗାଇ ପିଠି ଆଉଁସିଲା । ସୁନା ପୁଣି ସିଧା ସଳଖ ଠିଆ ହୋଇ କହିଲା, ମୋ'ର ବାପଭାଇ ଆସୁଛନ୍ତି । ବାସ୍ତା ଆମେ ପୁଣି ଗାଁକୁ ଯିବା ଫେରି । ମାଗତା ବାହାହେବ ଲତାକୁ । ତା'ଛଡ଼ା ଆଉ ଅଛି କିଏ ? ଲତାଟା ଭଲ ଝିଅ । ମୋ'ର ପିଲାଦିନର ସାଙ୍ଗ । ଲତା ହେବ ନାଇକର ବୋହୂ । କେତେ ସୁଖରେ ରହିବ । ଲତା ଖୁସିହେବ । ଆଉ ଆମେ—

ଆମେ ବି ଖୁସି ଆନନ୍ଦରେ ରହିବା ସୁନା, ନାଇକକୁ ମାଗିଲେ ସେ ଖଣ୍ଡେ ଭୂମି ଦେବ । ଭୂମି ଚଷିବା । ପୋଡ଼ୁ ଚାଷ କରିବା । ମୁଁ ବେଳ ପାଇଲେ କୁଲି କରି ଯିବି । ଆମେ ବି ସୁଖରେ ରହିବା । ନୂଆ ଘର ବାନ୍ଧିବା ।

ସୁଖରେ ରହିବା ବାସ୍ତା । ତୋ ସାଥିରେ ମୁହିଁ ସଦାବେଳେ ଥିବି । ତୋ ସଙ୍ଗେ ମିଶି କୁଲି କରିବି । ତୋଙ୍କର ଜଗିବି—

କୋଳାହଳ ପାଖେଇ ଆସିଲା । ବଡ଼ ପଥର କଡ଼ ବାଙ୍କୁଲି ବାଟରୁ, ଗଛ ଗହଳି ଭିତରୁ ବାହାରି ପଡ଼ିଲେ ଏକସଙ୍ଗେ ଅନେକ ଲୋକ । ବାସ୍ତା ଓ

ସୁନାଙ୍କର ଅଗରେ ଠିଆହେଲେ—ମୁନ୍‌ସିବାବୁ, ଜଣେ ଜମାନ୍, ଜାନ ଭେଡ଼ିକା, ନାଇକ, ନୋକା ଦଶାର, ମାଗତା, ବୁଢ଼ିଆ, ସୁନ୍ଦ, ଚଇତୁ, ପୁଣି ବନମାଳି ସାହୁକାର ।

ମୁନ୍‌ସି ପଚାରିଲେ, ଏଇ ଛୋଉର ଝିଅ ସୁନା ?

ଭେଡ଼ିକା ଉତ୍ତର ଦେଲା, ବଡ଼ ମହାପ୍ରଭୁ । ରକ୍ଷାକର ।

ମୁନ୍‌ସି ପଚାରିଲେ, କରେ ନୋକା ନାଇକ, ଏଇ ଟୋକୀର ନାଆ ବାପ୍ପାକନ୍ଧ ?

ହଁ, ଅଧିକାରୀ—

ବନମାଳୀ ସାହୁକାର ହାତ ଯୋଡ଼ି ଜଣାଇଲେ, ଦେଖ ମୁନ୍‌ସି, ସୁନା ଯେଉଁ ଶାଢ଼ୀ ପିନ୍ଧିଛି, ବେକରେ ଯେଉଁ ସୁନାହାର ଝୁଲିଛି, ସେ ସବୁ ମୋର । ଯେଉଁ ନିଅମ ହେବ ମୁଁ କରିବି ।

ମୁନ୍‌ସି ପଚାରିଲେ, ହେ ଟୋକୀ, କିଏ ତତେ ଦେଲା ରେ ?

ସୁନା ଚୁପ ରହିଲା । ଭୟରେ ଗୁରୁଆଡ଼ିକୁ ଚାହିଁଲା ।

କହ, ଡର ନାହିଁ, ବାପ୍ପା କନ୍ଧ ଦେଇଛି କି ? ମୁନ୍‌ସି ପଚାରିଲେ ।

ସତକଥା କହି ଦେ ସୁନା । ପୁଟି ଗାଆଁର ଜାନି କାଡ୍ରାକା ଭେଡ଼ିକା ତା'ର ଝିଅକୁ କହିଲା ।

କହ, ଡର ନା ସୁନା । କିନାମ ଗାଆଁର ନାଇକ ମିଲିକା ନୋକା ପ୍ରବୋଧିଲା ।

ସୁନା କହିଲା ମତେ ବାପ୍ପା ଦେଇଛି ।

ବାପ୍ପା ଯେଉଁ ଖଦ ପିନ୍ଧିଛି ସେ ମିଶା ମୋର । ସାହୁକାର ବନମାଳି କହିଲେ ।

ମୁନ୍‌ସି ପଚାରିଲେ, କରେ ବାପ୍ପା ?

ବାସୁଆ ନିର୍ଦ୍ଦେଶରେ ଉତ୍ତର ଦେଲା, ସତକଥା ମହାପ୍ରଭୁ । ବୁଢ଼ିଆ ବନମାଳି ସାହୁକାର ଘରୁ ଚୋରି କଲା । ମତେ ଶାଢ଼ୀ, ସୁନାହାର, ଘଇଠା ଖଡ, ଆଞ୍ଜୁଳେ ଟଙ୍କା ଦେଲା । ଆଉ ସବୁ ଟଙ୍କା ସେ ନେଲା ।

ବୁଢ଼ି ବାଉକ ହାତଯୋଡ଼ି କହିଲା, ଚୋର ଫଟକାରଟେ ସେ ମହାପ୍ରଭୁ । ଦେଖ୍, ଦେଖ୍ କେମିତି ମିଛ କଥା କହୁଛି । ମୁଁ ତାକୁ ଧରିଲି ବୋଲି ମତେ ଚଢ଼ିଥିଲା, ମୋ ନାମରେ ମିଛ କହିବ ।

ବାସୁଆ କହିଲା, ନାହିଁ ମହାପ୍ରଭୁ । ବୁଢ଼ିଆ ଡମ୍ବ ମିଛ କହୁଛି । ମୁଁ ତା ସାଙ୍ଗରେ ଯାଇଥିଲି । ସାହୁକାର ଘରେ ପଶିନାହିଁ । ବୁଢ଼ିଆ ଡମ୍ବ ଏକା ପଶିଲା । ସବୁ ଆଣିଲା । ପୁଡ଼ା ସେ ରଖିଛି ।

ବୁଢ଼ିଆ ମାଗତାକୁ ଚାହିଁ କହିଲା, ଦେଖ୍‌ରେ ମାଗତା, ବାସୁଆ କିମିତି ମିଛ କଥା କହୁଛି । ଜହ୍ନ ଘଡରେ ତୁଇ ମୁଁ ଝୋଲ ପାଖରେ ଶିକାର କରିବାକୁ ଜଗି ବସିଥିଲୁ ନା ? ଏଇ ବାସୁଆ କନ୍ଧ ପୁଡ଼ା ପଠେ ନେଇ ଯାଉଥିଲା । ମୁଁ ତାକୁ ଧରିଲି ।

ମୁନ୍‌ସି ପଚାରିଲେ, କିରେ ମାଗତା ?

ସତକଥା ମହାପ୍ରଭୁ । ବାସୁଆ କନ୍ଧ କାନରେ କସ୍‌ଟା ବାନ୍ଧିଥିଲା । କାନ୍ଧରେ ତାର ଏଇ ଶାଢ଼ୀ ଲୁଗା ଥିଲା ।

ବାସୁଆ କହିଲା, ମାଗତା ମିଛ କହୁଛି । ମତେ ସେ ଦେଖିନାହିଁ । ବୁଢ଼ିଆ ଡମ୍ବଠୁ ଜିନିଷ ଆଣି ମୁଁ ଲୁଚି ଲୁଚି ପଳେଇ ଆସିଲି ।

ମାଗତା କହିଲା, ମୁଁ ଦେଖିଛି ମହାପ୍ରଭୁ ।

ବାସୁଆ ମତେ ସବୁ କହୁଥିଲା । ପୁନୁ ଡମ୍ବ କହିଲା, ସୁନାକୁ ସେ ପିଟି ନେବ; ଧାଙ୍ଗଡ଼ୀ କରିବ । ଝୋଲ ଟଙ୍କା ଦେବାପାଇଁ ସେ ସାହୁକାର ଘରୁ ଚୋରିକଲା ବୋଲି ମୋତେ କହିଲା ମହାପ୍ରଭୁ ।

ତଇରୁ ଡମ୍ବ କହିଲ, ସେଇକଥା ବାଘୁା ମଠେ ମିଶା କହିଲା ମାହାପ୍ରଭୁ । ମିଛ କହିବ କ ? ଉପରେ ଧର୍ମ, ତଳେ ଧରଣୀ, ମିଛ କହିଲେ ଆଖି ଫୁଟିଯିବ ନାହିଁ କ ?

ବାଘୁା କହିଲା, ସମସ୍ତେ ମିଛ କହୁଛନ୍ତି ମହାପ୍ରଭୁ ।

ମୁନ୍ସି ରଗିଯାଇ କହିଲେ, ଷ୍ଟୁପ୍ ବଦମାସ୍ । ସମସ୍ତେ ମିଛ କହୁଛନ୍ତି, ଏକା ଏଇ ସତ କହୁଛୁ । ଟଙ୍କା କଣ କଲୁ ? ପୁଡ଼ କ'ଣ କଲୁ ?

ଟଙ୍କା ରଖିଛୁ । ପୁଡ଼ ବୁଢ଼ିଆ ଡମ୍ବ ନେଲା ।

ଦେଖ ମହାପ୍ରଭୁ ମିଛ କହୁଛୁ ମୋ ନାମରେ ।

ସୁକୁ କହିଲା କେତେ ଦୂରରେ, ଝୋଲ ପାଖରେ ଗୋଟେ ପୁଡ଼ ମୁଣ୍ଡ ପଡ଼ିଛୁ । ମୁଁ ଆସୁଥିଲ ଦେଖିଲି ।

ମୁନ୍ସି ଆଦେଶ ଦେଲେ, ଜମାନ୍, ବାଘୁା କନ୍ଧକୁ ହାତ କଡ଼ା ଦେଇ ଦଅ । ଏଇ ଟୋକାକୁ ବ ଅରେଷ୍ଟ କର ।

ଡେଙ୍ଗୁରିକା ପ୍ରାର୍ଥନା କଲା, ମୋର ଧାଙ୍ଗଡ଼ୀ ହିଅ ମହାପ୍ରଭୁ ତା'ର କ ଦୋଷ ? ବାଘୁା କନ୍ଧ ତାକୁ ସବୁ ଦେଇଛୁ । ସୁନା, କାଢ଼ିଦେ ବେକରୁ ହାର, ତୋ ଲୁଗା ପାଲଟି ପକା ।

ସୁନା ଅଚଳ ରହିଲା ।

ଜମାନ ବାଘୁା କନ୍ଧ ହାତରେ ବେଡ଼ି ପିନ୍ଧାଇଲା । ସୁନା ଆଉ ତାର କୋହ ସମ୍ଭାଳି ପାରିଲା ନାହିଁ । ମୁନ୍ସିଙ୍କର ଗୋଡ଼ ତଳେ ପଡ଼ି କାନ୍ଦିବାକୁ ଲାଗିଲା । ମୁନ୍ସି ଛେକୁ ଘଞ୍ଚି ଠିଆ ହେଲେ । ନୋକା ନାଇକା ସୁନାର ହାତ ଧରି ତଳୁ ଉଠାଇଲ । କହିଲା, ଧାଙ୍ଗଡ଼ୀ ଟୋକା । ମୋ'ର ମାଗତା ପାଇଁ ତାକୁ ଠକ କରିଛୁ । ତା'ର ଦୋଷ ନାହିଁ । ଏଇ ବାଘୁା କନ୍ଧ ତାକୁ ଭୁଲେଇ ଅଣିଛୁ ।

ମୁନ୍ସି ପଚାରିଲେ, ତେବେ ଷ୍ଟୋଲମାଲ ?

ଜୋକା ନାଇକା ସୁନାର ବେକରୁ ହାର ଖୋଲି ମୁନ୍‌ସିକୁ ଦେଲା । କହିଲା, ନେ ତୋ ସୈଶ ମାଲ । ଟୋଢ଼ି, ଖଣ୍ଡେକ ଘରକୁ ଗଲେ ଦେଇଦେବ । ସୁନା ମୋର ବୋହୂ ମୁନ୍‌ସି, ଭେଣ୍ଡିକା ଜାନ ମତେ କଥା ଦେଇଛି । ତାକୁ ଛାଡ଼ିଦେ ।

ଆଗରେ ବାପ୍ପା କନ୍ଧ, ଦୁଇ ହାତରେ ଲୁହା କଡ଼ି, ଅଣ୍ଟାରେ ବନ୍ଧା ହୋଇଛି ଦଉଡ଼ି । ଛେଳି ଛୁଆପରି ବଲ ବଲ କରି ଗୁରିଆଙ୍କୁ ଚାହୁଁଛି । ତୁଣ୍ଡରୁ ଆଉ କଥା ବାହାରୁ ନାହିଁ । ସତକଥା ସେ କହିଦେଇଛି । ଆଉ ତା'ର କିଛି କହିବାର ନାହିଁ । ଏଣିକି ଯେଉଁମାନେ ବିଚାର କରିବେ, ଯେଉଁମାନେ ଆଇନ୍‌ ଧରି ବସିଛନ୍ତି, ତାଙ୍କର ଦାୟିତ୍ୱ ।

ଉପରେ ଅକାଶ, ତଳେ ଧରଣୀ ମାତା, ଚାରିପାଖେ ଗଛ, ପଥର, ପାହାଡ଼ ଝରଣା । ସମସ୍ତେ ଯେପରି ସତ୍ୟର ଅବତାର, ବାପ୍ପା କନ୍ଧ ମଧ୍ୟ ଠିକ୍ ସେହିପରି । ବୁଢ଼ି ଡମ୍ବର ମୁହଁକୁ ଚାହିଁ ତାର ଆତ୍ମା ବାହୁନି ଉଠୁଛି ।

ବୁଢ଼ିଆ, ଡମ୍ବ ପିଲା, କନ୍ଧର ସେ ଆଖି । ବନ ଗହନର ତଳେ ସେ ଚାଲନ୍ତି ସାପ । ସେ ଚୋରି କରୁଛି, ଠକୁଛି, ମିଛ କହୁଛି, ଗାଁ ଗାଁରେ ସୃଷ୍ଟି କରୁଛି କନ୍ଦଳ । ରକ୍ତ ଛୁଟାଇଛି । ରକ୍ତ ପିଇ ବଞ୍ଚୁଛି । ତଥାପି, କନ୍ଧ ପିଲା ତାର କଥା ମାନେ । ବୁଢ଼ିଆ ଡମ୍ବ ବାପ୍ପାର ଦୁର୍ଦ୍ଦଶା ଦେଖି ହସୁଛି ।

ମାଗତା କନ୍ଧ ପିଲା, ମିଛ କହି ଅରି ଉଠୁଛି ତା'ର ଆତ୍ମା । ତଥାପି, ସେ ମିଛ କହୁଛି । ଆଗରେ ସୁନା, ଯାହାକୁ ସେ ଚାହେଁ, ଯାହାକୁ ସେ ନଜର କରିବ ।

ସୁନା, ସବୁ କଥା ସେ ବୁଝିଛି । ସ୍ୱପ୍ନ ତାର ଭାଙ୍ଗିଛି । ତାଆରି ପାଇଁ ନିରୀହ, ସରଳ, ଅନାଥ ବାପ୍ପା, କନ୍ଧ ଚୋର ହୋଇଛି । ପୁଣି ଶିକ୍ଷା ପାଇବ । କେବଳ ତାଆରି ପାଇଁ । ସ୍ୱପ୍ନ ଭାଙ୍ଗିଛି । ସବୁ ଆଶା ମିଳାଇ ଯାଇଛି । ମାଗତା ହେବ ତାର ଧାଙ୍ଗଡ଼ା, ମାଗତା !

ମିଳକା ନୋକାର ହାତରୁ ହାତ ଖସାଇ ସୁନା ଧାଇଁଗଲା ବାଘା ପାଖକୁ । ବାଘାକୁ କୁଣ୍ଢାଇ ଧରି ଚଳ ଚଳ ଆଖିରେ ସୁନା ମୁନ୍‌ସିଙ୍କୁ ପ୍ରାର୍ଥନା କଲା, ମାହାପ୍ରଭୁ ନେ ନେ, ତୁ ସବୁ ନେଇଯା । ବାଘା ଚୋରି କରି ନାହିଁ । ତାର କିଛି ଦୋଷ ନାହିଁ । ସବୁ ତାକୁ ବୁଝି ଡମ୍ବ ଦେଇଛୁ । ତୁ ସବୁ ନେଇଯା । ମୁନ୍‌ସି ମାହାପ୍ରଭୁ ତାକୁ ଛାଡ଼ିଦେ । ଆମର କିଛି ଲୋଡ଼ା ନାହିଁ, ବାଘା ମୋର ଧାଙ୍ଗଡ଼ା, ଆମେ ଜଙ୍ଗଲକୁ ପଳାଇବୁ ମୁନ୍‌ସି ମାହାପ୍ରଭୁ, ତାକୁ ଛାଡ଼ି ଦେ ।

ମୁନ୍‌ସି ରେଗିଯାଇ କହିଲେ, ଜମାନ, ସେ ଟୋକୀକୁ ବି ଆରେଷ୍ଟ କର ।

ଜମାନ ସୁନାର ହାତ ଧରିଲା ।

ସୁନା କହିଲା, ବାଘା ଯଦି ଶିକ୍ଷା ଯିବ, ମତେ ବି ଶିକ୍ଷା କରେଇ ଦେ ମୁନ୍‌ସି । ମୁଁ ମିଶା ଦୋଷ କରିଛୁ ।

ନୋକା ନାଇକ କହିଲା, ଆରେ ମାଗତା, ସୁନାର ହାତ ଧରି ନେଇଚାଲ ଗାଁକୁ । ସେ ଚୋ'ର ଧାଙ୍ଗଡ଼ୀ । ଭେଡ଼ିକା ଜବାବ ଦେଇଛୁ ।

ଭେଡ଼ିକା କହିଲା, ସତକଥା, ମାଗତା—

ମାଗତା ସୁନାର ହାତ ଧରି ବାଘା ପାଖରୁ ଟାଣି ଆଣିଲା । ସୁନା ଚିତ୍କାର କଲା । ତା'ର ପ୍ରାର୍ଥନା କେହି ଶୁଣିଲେ ନାହିଁ ।

ସୁନାକୁ ସଙ୍ଗରେ ଧରି ଗ୍ରାମଲୋକେ ଗ୍ରାମକୁ ଫେରିଲେ । ଦରିଦ୍ର ବାଘାକୁ ସଙ୍ଗରେ ଧରି ମୁନ୍‌ସି ପୁଡ଼ି ମୁଣ୍ଡି ଦେଖିବାକୁ ଆଗେଇ ଗଲେ । ସଙ୍ଗରେ ଗଲେ ବୁଝି ବାରିକ, ଚଇତୁ ଓ ସୁନ୍ଦ୍ରୁ ।

ସିପି ଗାଁର ଟ୍ରେଟ କନ୍ଧ ପଲ୍ଲୀ ବାହାରେ—ଡୋଙ୍ଗର ତଳ ପଥର ଚଟାଣ ଉପରେ ବସିଛି ସୁନା । କୋଳରେ ତାର ବର୍ଷକର ପୁଅ । କେତେଗୁଡ଼ାଏ ଫୁଲ ଧଡିର ପିଲାର ଆଗରେ ଜମାଇ ଦେଉଛି ! ପିଲାଟା ଖେଳୁଛି । ନିଜେ ସୁନା ଚାହିଁ ରହିଛି ଯାମ୍ନାର ଗେଡ଼୍ଡ଼ା ଆଡ଼କୁ, ହେଲା ଦ୍ୱିପ୍ରହର ।

ପଛରୁ ଛପି ଛପି ଆସିଲା ଲତା । ସୁନାର ଦୁଇ ଆଖି ବୁଜି ଧଇଲା ।

ସୁନା କହିଲା, ଛାଡ଼, ଲତା ।

ଲତା ଆଖି ଖୋଲିଦେଲା । ପିଲାଟିକୁ କୋଳକୁ ନେଲା । କହିଲା, ମୁଁ ଜାଣେ ତୁ ଏଇଠି ଥିବୁ । ତୋ ଘରକୁ ଯାଇଥିଲି । ମାଗତା ନାଇକ ନାହିଁ । ତୋ'ର ଖମ୍ମାଣ ପୁଚିଆ କହିଲା, ମାଗତା ପୁଲକ ସାଥିରେ କେଉଁଣେ ଯାଇଛି ଆଉ, ତୁ ଟିକି ନୋକାକୁ ଧରି କେଉଁଣେ ଯାଇଛୁ । ଖୋଜି ଖୋଜି ଆସିଲି ।

କସ ଲଗି ମୋତେ ଖୋଜୁଥିଲୁରେ ଲତା ?

ଏଇ ଟିକି ନୋକାର ଲଗି । ଲତା ମାଗତାର ସାନ ପୁଅ ନୋକାକୁ ଛାତିରେ ଜାକି ଧଇଲା । କହିଲା, ଦେଖ ସୁନା, ନୋକା ନାଇକ ମତେ ଛାଡ଼ି ଡଙ୍କେ ବୋହୂ କଲା । ଜାକର ଠାକୁରାଣୀ ତାକୁ ଟେକିଲା କି ? ଅଧର୍ମ କଥା କଲା । ମୁଇ ତାର ବୋହୂ ହେଲୁ । ମାସ ଗୋଟେ ପୂରିଲା ନାହିଁ । ନୋକା ନାଇକକୁ ବାଘ ଖାଇଲା । ଦଣାଣ ସିନା କହୁଛି, ସେଇ ନୋକା ତୋ'ର କୋଳରେ ଜନମ ହୋଇଛି, ମୁଁ କହୁଛି, ସେଟା ମିଛ କଥା । ନୋକା ହୋଇଛି ବାଘ ଡ଼ୁମା ।

ସତ ଲୋ ଲତା, ନୋକା ନାଇକକୁ ବାଘ ଖାଇ ନାହିଁ, ତାକୁ ଖାଇଛି ବାସ୍ତାର ବାପ ବାଘ ଡ଼ୁମା । ମାଗତା ଫଟଜାର କାମ କଲା, ମିଛ କହିଲା, ବାସ୍ତାକୁ ଶିକ୍ଷା କରେଇଲା । ବାସ୍ତାର ବାପ ମାଗତାର ବାପକୁ ଖାଇଲା । ଲତା ରେ—।

ତୁନି ରହିଲୁ ଯେ ସୁନା ?

ଏଇଠି ଥିଲା ବାସ୍ତାର ଭଙ୍ଗା ଘର । ଦି ବରଷ କି କେତେ ହେଲାଣି । ତା ଘରର ଚିହ୍ନ ନାହିଁ । ଢ଼ିହ ଉପରେ କେତେ ବଣୁଆ ଗଛ ଉଠିଲାଣି । ବାସ୍ତା ଆଉ ଫେରିବ ନାହିଁ ଲତା ?

ସୁନାର ଆଖି ଛଳ ଛଳ ହେଲା ।

ଲତା କହଲା, ପିଟାମ ଭଙ୍ଗ୍ ଡମ କୋରାପୁଟ ଜେଲରୁ ଫେରୁଛୁ । ତାକୁ ପଚାରଲି ଯେ, ସେ କହଲା, ବାପ୍ପା ଜେଲରୁ ପଲାଇବାକୁ ବସିଥିଲା । ଧରା ପଡ଼ି ପୁଣି ବେଶୀ ଦିନ ଶିକ୍ଷା ପାଇଛୁ । ଭିଙ୍ଗ୍‌କୁ ପଚାରୁଥିଲା ତୋ କଥା । ଭିଙ୍ଗ ସବୁ କହଲାରୁ ବାପ୍ପା କହଲା, ଶିକ୍ଷା ସେରି ଫେରଲେ ମାଗତାର ମୁଣ୍ଡ ହାଣିବ । ମାଗତା ମିଛ କହି ତାକୁ ଶିକ୍ଷା କରେଇଛୁ ।

ବାପ୍ପା ତେବେ ଫେରବ ଲତା ?

ଆଜି ନ ହେଲେ, କେବେ ତ ଫେରବ ।

ଲତା, ତୁ ବାପ୍ପାର ଘରଣୀ ହେବୁ ?

ଲତା ଘୃଣାରେ ଚେହିଁଲା ସୁନାକୁ । କହଲା, କାହିଁକି ଲୋ ? ତୁ ହେଲୁ ନାଇକର ଘରଣୀ, ଯେଉଁ ନାଇକ ମୋର ଅନ୍ଦ୍ରେସ୍ୱ, ଆଉ ମୁଁ ହେବି କେଉଁର (ଦାଗୀର) ଘରଣୀ ?

ନାଇକର ଘରଣୀ ହେଇ କି ସୁଖ ମୁଁ ପାଉଛୁ ତ ଦେଖୁଛୁ ଲତା ? ମାଗତା ଦିନ ସାରା ମଦ ଖାଉଛି । ପରର ଧାଙ୍ଗଡ଼ୀ ପଛରେ ଧାଉଁଛି । ଯେତେବେଳେ ମନ ମତେ ପିଟୁଛି । କି ସୁଖ ମୋ'ର ? ବାପ ମତେ ତା'ର ହାତରେ ଦେଲା । ଅଜି ପୁଣି ବାପ କହୁଛି, ସୁନା ଗୁଜିଆ ମୋ ଘରକୁ । ତୋ ପାଇଁ ଅନ୍ୟ ଧାଙ୍ଗଡ଼ା ଠିକ୍ କରିବ । ମାଗତା ତାର ଯୋଲା ଟଙ୍କା ଫେରାଇ ନେବ ତ, ଅଉ କଣ ?

ସେଇଆ କରୁନୁ ସୁନା, ବାପର କଥା ଅମାନ୍ୟ କର ନା ।

କେତେବେଳେ ମୋର ମନ ଡାକୁଛି । ଏଇ ପିଲାଟା ମୋ'ର ଗୋଡ଼ ବାନ୍ଧି ରଖିଛି ରେ ଲତା । ପୁଣି ଭାବୁଛି, ପିଲା ତ ମୋ'ର ନୁହେଁ, ପିଲା ମାଗତାର । ତୁଇ ଯଦି ମାଗତାର ଘରଣୀ ହୋଇଥାନ୍ତୁ, ଏ ପିଲା ତୋ କୋଳରେ ଜନମ ହୋଇଥାନ୍ତା । ମାଗତା ତାର ପିଲାକୁ ନେଉ, ମୋର କଣ ହେବ ?

ସତ କଥା, ସୁନା । ସେଟା ମାଗତାର ପିଲା । ଯିଏ ତା'ର ଧାଙ୍ଗଡ଼ୀ ହୋଇଥାନ୍ତା ତା' କୋଳକୁ ଆସିଥାନ୍ତା ।

ମନ କେ, ତେବେ ଯାଅ ମିଳାଇ ଗୁଣ୍ଡ ବାପଘରକୁ ମୁଁ ଗ୍ଲଯାଏ, ମଦ ଖାଇ ଦନେ ମାଗତା ତାଙ୍କ ମାରିଦେବ । ଦେଖ୍ ପଛେ ସେ ମାଗତାର ପିଲ, ମୋ ପେଟରେ ଥାଇ ମୋ ରକତ ଖାଇ ବଢ଼ିଛି ତ । ସେଥିଲାଗି ମାଗତାର ଘରଗୁଣ୍ଡ ଯାଇ ପାରୁ ନାହିଁ ରେ ଲତା, ସବୁ ଦୁଃଖ କଷ୍ଟ ସହୁ ମୁଁ ପଡ଼ି ରହୁଛି ।

ମାଗିବ ପୁନା, ଏ ପିଲାକୁ ମତେ ଦେବୁ ? ମାଗତା ମତେ ଘରଣୀ କଲ ନାହିଁ ସିନା, ତା ପିଲା ମତେ ମା କରୁ, ମୋ ବାପର କଥା ରହୁ । ତା' ଓ ମା ଶାନ୍ତି ପାଉ ।

ପୁନା ମୁହଁ ଫଣ ଫଣ କରି କହିଲା, ମୁଇ କଏ ସେ ମାଗତାର ପିଲାକୁ ତୋତେ ଦେବି ? ମୁଁ ସିନା ମାଗତାର ଖମ୍ବାରେ ଦୋଇଛିରେ ଲତା, ତା ମାଡ଼ ଗାଳି ସହୁଛି, ପେଟ ମରେ ପିଉଛି, ପିଲାକୁ ପାଳୁଛି । ତୁଇ ଯା ମାଗତାକୁ ମାଗିବୁ ।

ଲତାର ଛାତିରୁ ଟିକପୁଅ ମିଲକା ନୋକାକୁ ଟାଣି ନେଇ ପୁନା ଛାତିରେ ଲଗାଇଲା । ଲତା ଆଖି ଛଳ ଛଳ କରି ପୁନାକୁ ଚାହିଁ ରହିଲା ।

ପଥର କଡ଼ ଅରଣ୍ୟ ଭିତରୁ ପୁଙ୍ଗି ବାହାରି ଆସିଲା । ଖୋଜି ଖୋଜି ସେ ପୁଲକକୁ ପାଉ ନାହିଁ । ଭାଳେ ସେ ପାଣି ଘାଟରେ ଥିବ, ସେଥିପାଇଁ ଝରଣା କୂଳକୁ ଆସିଲା । ପୁଲକକୁ ସେଠାରେ ନ ପାଇ ଲତାକୁ ପଚାରିଲା, ପୁଲକକୁ ଦେଖିଲୁ କି ?

ଲତା ଉତ୍ତର ଦେଲା, ନାହିଁରେ ପୁଙ୍ଗି ।

ପୁଙ୍ଗି ବ୍ୟସ୍ତ ହୋଇ ପଚାରିଲା, ବାଘ ମାରିଛି ବୋଲି ସାହୁକାରଠୁଁ ଛୁଟି ନେଇ ଆସିଲି । ଦେଖିଲି ଘରେ ତାଟି ପଡ଼ିଛି, ପୁଲକ ନାହିଁ । ଭଣ୍ଡି ଶୁଖି ଯାଉଛି । ଘରେ ପେଜ ଟିକେ ବି ରଖି ନାହିଁ । ଗଲା କୁଆଡ଼େ ?

କହା ଖୋଲି ଯାଇଥିବ ।

ପୁଙ୍ଗି କହିଲା, ବୁଢ଼ିଆ ଡମ୍ବ କହୁଛି, ମାଗତା ସଙ୍ଗେ ପନ୍ଦ୍ରିକ ବଣକୁ ଯାଇଛି । ଡମ୍ବ ଫଟକାର ସବୁବେଳେ ମିଛ କହେ ।

ଗଛ ଉହାଡ଼ରୁ ବୁଢ଼ିଆ ଡମ୍ବ ବାହାରି ପଡ଼ିଲା । ବୋଧହୁଏ ସେ ପୁଙ୍ଗିର ପଛେ ପଛେ ଲୁଚି କରି ଆସୁଥିଲା । ପୁଙ୍ଗିର କଥା ଶୁଣି ସେ କହିଲା,—ମିଛ ନୁହେଁରେ ପୁଙ୍ଗି, କନାମ ଗାଁ ବାଟରେ ଦହେଁ ଏକାଠି ଯାଇଥିଲେ, ମୁଁ ନିଜେ ଦେଖିଛି ।

ପୁଙ୍ଗି ମନକୁ ମନ କହିହେଲା, କନାମ ଗାଁ ବାଟରେ ? ଯାଏଁ ଦେଖେ ।

ପୁଙ୍ଗି ହାତରେ ଠାଙ୍ଗି କାନ୍ଧରେ ପକାଇ ଠକଠକ ପୁଣି ଜଙ୍ଗଲ ଭିତରକୁ ଚାଲିଗଲା । ପଛକୁ ଫେରି ଗୁହିଁଲା ନାହିଁ ।

ବୁଢ଼ି ବାଶକ ଟିକିଏ ଅପେକ୍ଷା କଲା । ପୁଙ୍ଗି ବଣ ଭିତରେ ଲୁଚି ଗଲାରୁ ସେ କହିଲା, ତମେ ଏଠି କ'ଣ କରୁଛ ରେ—

ସୁନା କହିଲା ତୋ'ର କଣ୍ ଥାଏ ?

ବାପ୍ଲା କନ୍ଧ ଖବର ପଠାଇଛି ।

ଲତା କହିଲା, ଭୁଇ ମିଛ କହିଲରୁ ତା'ର ଶିକ୍ଷା ହେଲା ।

ମୋ'ର କି ଦୋଷ ? କହ ସୁନା, ତୋ ଲାଗି ବାପ୍ଲାର ଲାଗି ମୁଁ ଚେଷ୍ଟା କଲି ନାଇ କି ? ବାପ୍ଲା ମୋର ସାଥିରେ ସିନା ଥିଲା । ସୁନ୍ ଚଇରୁ ପୋଲିସ୍‌ରେ କହିଲେ । କୋଟଘରେ ମହାପ୍ରଭୁ ଆଗରେ ମୁଇଁ ସିକ୍ସନ ପୋଥି (ପେନାଲ୍

ବୋଉ) ଧରି ସତ କଥା କହିଲା । ନାଇକ ହେଲେ କିସ ହେଲା, ମାଗତା ମିଛ କହିଲା । କୋର୍ଟଘର ମତେ ଛାଡ଼ିଦେଲେ । ବାପାଙ୍କୁ ଶିକ୍ଷା କରେଇଲେ । ମୋ'ର କି ଦୋଷରେ ସୁନା ?

ସୁନା ପଚାରିଲା, ବାପା ସଙ୍ଗେ ତୋ'ର କେଉଁଠି ଦେଖା ହେଲା ବାରିକ୍ ?

ମୋ'ର ଦେଖା ହୋଇ ନାହିଁ । ଭିକ୍ଟୁ ଜେଲରୁ ଫେରିଛି ସେ କହୁଥିଲା—!

ଲତା ପଚାରିଲା, କିସ କହୁଥିଲା ?

ବୁଢ଼ି କହିଲା, ଶିକ୍ଷା ସରିଲେ ବାପା ଫେରିବ ।

ସୁନା କହିଲା, ଫେରୁ ମୋର କି ଥାଏ ?

ବୁଢ଼ି କହିଲା, ବାପା ସିଂହାମ୍ ଭିକ୍ଟୁକୁ କହିଲା ସେ ଶିକ୍ଷାପାଇ ଫେରିଲେ ସେ ତୋ'ର ଖମ୍ବାର ହେବ ।

ମୋ'ର କିସ ହେବ ଖମ୍ବାର ? ଯା, ଯା, ମାଗତାକୁ କହିବୁ ।

ସୁନା ମହୁରୁଣୀ ନ ରହି ପିଲାଙ୍କୁ ଗ୍ରାମରେ ଯାକ ଗେଡ଼୍ଡ଼ା କୂଳେ କୂଳେ ଚାଲିଗଲା । ଅରେ ହୋଇ ପଛକୁ ଫେରି ଚାହିଁଲା ନାହିଁ ।

ବୁଢ଼ି କହିଲା, କରେ ଲତା, ତତେ ଧଇଁଡ଼ା ମିଳୁ ନାହିଁ କି ?

ବୁଢ଼ିର ତମ୍ବ ଲୋକଟେ, ନୋହିଲେ ତୋ ସାଥିରେ ପଳାଇ ଯାଆନ୍ତା । ତମ୍ବ ଫଟକାର, ସବୁ ଚୋର, ବଦମାସୀର ମୂଳ ରୁଇ ।

ମୁହଁ ମୋଡ଼ି ଲତା ଚାଲିଲା ସୁନାର ବାଟରେ । ପଛରୁ ଡାକ ଶୁଭିଲା ବୁଢ଼ିଆ, ହେ ଲତା, ଜଙ୍ଗଲ ଜମାନ ଆଇଚରେ, ତତେ ଖୋଜୁଛୁ । ଲତା, ହେ ଲତା—

ଲତା ଫେରି ଚାହିଁଲା ନାହିଁ !

ସନ୍ଧ ପହର ଗଡ଼ି ଗଲାଣି । ପାହାଡ଼ ଫାଙ୍କରୁ ଉଠିଲାଣି ଜହ୍ନ । ମାଗତା ନାଇକର ଘର ଆଗ ବୁଦବୁଦିକା ଜଙ୍ଗଲ ଭିତରେ ବଡ଼ ବଡ଼ ମହୁଲ ଗଛ । ଗଛ ଦହାଡ଼ରେ ଲୁଚି ଛପି ଜହ୍ନ ଆଲୁଅ ଛାଇ ତଳେ ଠିଆ ହୋଇଛି ବାପ୍ପା କନ୍ଧ । ଅଢ଼େଇ ବର୍ଷ ଜେଲ ଖଟି ସେ ଫେରିଆସିଛି ।- ସବୁ କଥା ସେ ଶୁଣିଛି । ଜୀବନର ସବୁ ଆଶା ତା'ର ପୋଡ଼ି ଜଳି ଯାଇଛି । ବାକି ରହିଛି, ପ୍ରତିଶୋଧ ।

କାନ୍ଧରେ ଟାଙ୍ଗିଆ । ଭାବୁଛି, ଥରେ ଯଦି ମାଗତାକୁ ସେ ଦେଖନ୍ତା, ମାଗତା, ଯିଏ ତାର ଛାତି ଉପରୁ ସୁନାକୁ ଟାଣି ନେଇଛି, କୋର୍ଟ ଘରେ ମିଛ କହି ତାକୁ ଖଟେଇଛି ଜେଲ; ତାର କାନ୍ଧରୁ ମୁଣ୍ଡ ଛିଣ୍ଡାନ୍ତା । ବାପ୍ପାର ରକ୍ତ ଗରମ ହୋଇଉଠିଲା । ମାଗତା କାହିଁ ? ଏତେବେଳଯାଏ ଫେରୁ ନାହିଁ କାହିଁକି ? ଗୋଟିଏ ଚୋଟ, ତା'ପରେ ନିଜେ ମୁଣ୍ଡଟା ଧରି ଥାନାରେ ହାଜର ହୋଇ-ଯାଆନ୍ତା ।

ମାଗତା ଆସିଲା ନାହିଁ । ଘର ଭିତରୁ ପଦାକୁ ବାହାରି ଆସିଲା ସୁନା । ବାପ୍ପାର ଛାତି ଦମକି ଉଠିଲା, ସୁନା !

ସୁନାର ଆଖିରେ ପଡ଼ିଲା ଗୋଟାଏ ଚଳନ୍ତି ଛାଇ । ଚମକି ଉଠିଲା । ମନ ଭିତରୁ ଯେପରି କିଏ କହି ଉଠିଲା, ବାପ୍ପା, ବାପ୍ପା,—ଥରିଲା ତୁଣ୍ଡରୁ ବାହାରି ଆସିଲା କ୍ଷୀଣ କରୁଣ ସ୍ୱର, କି—ଏ, ବାପ୍ପା ?

ବାପ୍ପା ନିଜକୁ ଆଉ ଛପାଇ ପାରିଲା ନାହିଁ । ଗଛ ଗହଳି ଭିତରୁ ବାହାରି ପଡ଼ିଲା ଜହ୍ନ ଆଲୁଅକୁ । ଡାକିଲା, ସୁନା—

ସୁନା ଧୈର୍ଯ୍ୟ ଧରିପାରିଲା ନାହିଁ । ଧାଇଁଯାଇଁ ବାପ୍ପାକୁ ଆଲିଙ୍ଗନ କଲା । ତା'ର ଛାତି ଉପରେ ମୁଣ୍ଡ ରଖି ଭୁକ ଭୁକ କାନ୍ଦିବାକୁ ଲାଗିଲା । ବାପ୍ପାର ଆଖିରେ ଆସିଲା ଲୁହ ।

ଫେରି ଆସିଛୁ ବାପ୍ପା ?

ଆସିଛି ସୁନା, ମାଗତାର ମୁଣ୍ଡଟା ଧରି ପୁଣି ଫେରିଯିବ କୋର୍ଟଘରକୁ ।

ହୁ ବାପ୍ପା, ମାଗତାର କି ଦୋଷ ?

ତେବେ ଦୋଷ କାହାର ?

ଦୋଷ ମୋର । ମୁଁ ମଙ୍ଗିଲି ବୋଲି ମାଗତା ମତେ ଘରଣୀ କଲା ।

ମାଗତା ମତେ ଶିକ୍ଷା କରେଇଲା, କନ୍ଦପୁଅ ହୋଇ କୋଠ ଘରେ ପିଛ କହିଲା ।

ମୋ'ର ଲାଗି ତ ।

ତୋ'ର ଲାଗି ?

ସୁନାକୁ ଗ୍ଭର ଉପରୁ ଠେଲିଦେଲା ବାପ୍ପା । ସୁନା ପଡ଼ୁ ପଡ଼ୁ ଠିଆ ହୋଇଗଲା । କହିଲା, ମୁଁ ତୋର ଦୋଷ କହୁଛି । ମୋ' ମୁଣ୍ଡ ଛୁଁ ନେ ବାପ୍ପା, ମାଗତାର କଛି ଦୋଷ ନାହିଁ ।

ବାପ୍ପା ଠିଆହୋଇ ଭାବିଲା । ସୁନାକୁ କଛି ଉତ୍ତର ନ ଦେଇ ଟାଙ୍ଗିଆଟି କାନ୍ଧରେ ପକାଇ ଟଳି ଟଳି ଆଗକୁ ଗ୍ଭଲିଲା । ସୁନା ଷଣେ ତା'ର ପଛରୁ ଗ୍ଭହିଁ ଡାକିଲା, ବାପ୍ପା, ବାପ୍ପା—

ବାପ୍ପା ଅଟକି ରହିଲା ନାହିଁ । ସୁନା ତା'ର ପଛରେ ଧାଇଁ ତା'ର ହାତ ଧରି ଅଟକାଇଲା ।

ବାପ୍ପା—

କ'ଣ କହୁଛୁ ?

କଥାଟେ ମାନିବୁ ବାପ୍ପା ?

କିସ୍ କଥା ସୁନା ?

ଯେଉଁଠି ତତେ ପୁଲିସ ଜମାନ ଧରିଥିଲା ସେଇଠି ଗୁଇ ଥିବୁ କାଲି ଗାଧୁଆ ବେଳେ ?

କସ ଲାଗି ?

ସେଇଠି ତତେ ସେଇ କଥା କହିବ । ଏବୁ ବାପ୍ପା ?

ଏବ ସୁନା ।

ଯା ଏଥର ।

ବାପ୍ପା ଚାଲିଗଲା । ସୁନା ଘର ଆଗକୁ ଆସିଲା । ମାଗତା ଠିଆ ହୋଇଛି । ପାଟିରୁ ବାହାରୁଛି ମଦଗନ୍ଧ । ସୁନାକୁ ଦେଖି ଖନଖନ ପାଟିରେ କହିଲା ହେ ପୁଲକି—ପୁଲକ—ପୁଲକ

ମୁଁ-ସୁନା ।

ହେ ସୁନା, ସୁନା, ପୁଙ୍ଗି କହୁଛୁ ହାଣିବ । ମୁଁ ତାକୁ ଆଗ ହାଣିବି, ଆଗ ହାଣିବି ।

ସେ ଟଳିବାକୁ ଲାଗିଲା । ସୁନା ତାର ହାତ ଧରି ଅଟକାଇ ରଖିଲା । ଉତ୍ତର ଦେଲା ନାହିଁ । ମନ କଥା ମନରେ ଥାଉ । ମାଗତା ଆଗରେ କହିବ କାହିଁକି ? ମାଗତା ତାକୁ ଘରଣୀ କରିଛି ସତ, କନ୍ୟା ବି କରିଛି, କିନ୍ତୁ ମାଗତା ତାକୁ ନଜର ଧରି କରି ନାହିଁ । ମାଗତାର ମନ ତା'ପାଖରେ ନାହିଁ, ଦୂରରେ, କେତେ ଦୂରରେ—।

ସକାଳେ ଲତା ଘର କାମରେ ବ୍ୟସ୍ତ । ତା'ର ବୁଢ଼ୀ ମା ଘର ଆଗରେ ବସି ଛେଳି ଛୁଆକୁ ପତ୍ର ଖୋଇଛି । ଧାଙ୍ଗଡ଼ି ଝିଅ । ଲତା ଉପରେ ତା'ର ଆଖି ପଡ଼ିଲା । ବିରକ୍ତ ହୋଇ କହିଲା, କେତେଦିନ ଅଉ ବସିଥିବୁ ଲୋ ? ଯେତେ ଧାଙ୍ଗଡ଼ା ଥିଲେ ସମସ୍ତଙ୍କୁ ଘଉଡ଼ି ଦେଲୁ । ତୋ ହାଙ୍ଗର ଝିଅ, ପୁଣି ତୋଠୁ ଛିଲି ଝିଅ ଘର କଲେଣି, ଆଉ ତୁଇ ବସିଥା ।

ବଢ଼ିଣୋ୫ା ପିଣ୍ଡା ତଳକୁ ରଖିଦେଇ ଲତା କହୁଲା, ଦେଖ୍ ମା, ମୁଁ ଧାଙ୍ଗଡ଼ା ସାଥିରେ ପଳେଇଲେ ତୁଇ କେମିତ ଚଳିବୁ ? ତୋର ପୁଅ ତ ନାହିଁ । ଆଉର, କସ୍ ଲାଗି ମୁଁ କାହା ସାଥିରେ ଯିବ ? କେହୁ ତ ଝୋଲା ଟଙ୍କା ନେଇ ଆସୁ ନାହିଁ ।

ଏଇ ବରଷ ଚଇତ ପରବରେ ତୁଇ କାହାର ସାଥିରେ ଗୁଲ ଯାରେ ଲତା, ତୋ'ର ସୁଖ ଦେଖି ମୁଇଁ ଆଖି ଜୁଡ଼ିବ ।

ଲତା ଜବାବ ଦେଲା ନାହିଁ । ମାଠିଆ ଧର ପାଣି ପାଇଁ ଗେଡ଼୍ଡ଼ାକୁ ଯିବାକୁ ବାହାରଲା । ବୁଢ଼ୀ ତା ହାତରୁ ମାଠିଆ ଛଡ଼ାଇ କହଲା, ତୁଇ ଘରେ ଥା ମୁଁ ମାଠିଆଏ ପାଣି ନେଇଆସେ, ଏଇ ସୁନା ଆସୁଛୁ ।

ବୁଢ଼ୀ ମାଠିଆ ଧର ଗୁଲଗଲା । ଗୁଡ଼ରେ ସାନ ନୋକାକୁ ଜାକ ସୁନା ପହଞ୍ଚିଲା ଲତା ଘରେ । ଗୋଟିଏ କାଙ୍ଗେରେ ମାଠିଆ । ସୁନା ଆଜ ପ୍ରଫୁଲ୍ଲ ଦଶୁଛୁ । ଭଲ ଶାଢ଼ୀ ପିନ୍ଧଛୁ । ଯତ୍ନ କର କୁଣ୍ଡାଇଛୁ ମୁଣ୍ଡ । ଏଡ଼େ ସକାଳୁ ପେଣ୍ଡା ପେଣ୍ଡା ଫୁଲ ଖୋସିଛୁ ମୁଣ୍ଡରେ ।

କଲେ, ଆଜ ସଜବାଜ ହେଇ ପାଣିକ ଯାଉଛୁ କାହିଁକ ?

ଲଜଲଜ ହୋଇ ସୁନା କହଲା, ତୁ ଯିବୁ ନାଇଁକ ?

ମା ଯାଇଛୁ ।

ହାତ ବଢ଼ାଇ ଶିଶୁ ନୋକାକୁ ଲତା ସୁନାର ଗୁଡ଼ ଉପରୁ ଟାଣିନେଲା । ତା ମୁହଁରେ ବାରମ୍ବାର ଚୋକ ଦେବାକୁ ଲଗିଲ । ଶିଶୁ ନୋକା କର୍ କର୍ ହୋଇ ହସିଲ । ଲତା ତାକୁ ଗୁଡ଼ରେ ଜାକେଇ ହସି ହସି ନସ୍ୟାନ୍ତ ହେଲ ।

ସୁନାର ମୁହଁ ଗମ୍ଭୀର । ଆଖି କାନ୍ଦରା ।

ଭଗ ଜଣେ ହେବ ଲେ ତୋର ଏ ପୁଅ ନୋକା ।

ଲତା, ମୁଇଁ ଫେଲେ ଯାକେ ନୋକାକୁ ରଖିବୁ କ ପାଖରେ ?

ପାଣିକ ଯିବୁ ତ ? ଯା, ନୋକାର ଯାଙ୍ଗେ ମୂର୍ଖ ଖେଳୁଥିବ, ରୁଇ ଆଇଲେ ତଡ଼ିତ ଦେବ ।

ଆଉର କାହାକୁ ଦେବୁ ନାହିଁରେ, ପିଲ ମୋର କାହବ । ଫେରୁ ଫେରୁ ଟିକେ ଡେର ହେବ ଲତା ।

ତା'ର ବାପ ମାଗତାକୁ ମିଶା ଦେବ ନାହିଁ, ହେଲ ତ ?

ସୁନା ମାଟିଆଟି ଧର ଗୃଲ ଯାଉଁ ଯାଉଁ ଲୁହ ଝର୍ ଆଖିରେ ଟିକ ନୋକା ଆଡ଼କୁ କଣେଇଁ ଗୃହିଁଲ । ସେ ହସୁଥିଲ ଲତା ମୁହଁକୁ ଗୃହିଁ । ଲତା ତାକୁ ଗେଲ କରବାରେ ବ୍ୟସ୍ତ ।

ପାହାଡ଼ ତଳ ଝରଣା କୂଳରେ, ଅଚେଇ ବର୍ଷ ତଳେ ଯେଉଁଠି ପୋଲିସ ତାକୁ ବାନ୍ଧିଥିଲ, ଯେଉଁଠି ତାର ଗ୍ଳଡ ଉପରୁ ସୁନାକୁ ମାଗତା ଟାଣି ନେଇଥିଲ, ସେଇଠି ଗୃହିଁ ବସିଛି ବାପୁ । ସୁନା ଆସିବ, କଥାଟିଏ କହିବ । କିସ୍ କଥା ? ବାପୁର ତାହା ହିଁ ଚନ୍ତା ।

ସେ ଜେଲରୁ ଫେରଛି । ଦୁନିଆରେ ସେ ଏକା । ଯାହା ସମ୍ବଳ କିଛି ନାହିଁ । ଅଣ୍ଟା ଗୃରପାଖେ କନାଧଡ଼ି, ଗୃରଆଙ୍ଗୁଳ ଚନା ଖଣ୍ଡେ ଦାମନାରେ ଓହଲିଛି, ହାତେ ତଳକୁ । କାନ୍ଧରେ ଖଣ୍ଡେ ଟାଙ୍ଗିଆ । ଆଉ ହାତରେ ଗୁଣ ହୁଗୁଲା ଧନୁ ଖଣ୍ଡେ । ଅଣ୍ଟା ପାଖକୁ ଚମ ମୁଣିରେ କେଇଖଣ୍ଡି କାଣ୍ଡ ।

ସୂର୍ଯ୍ୟ ଉଠିଲେ ପାହାଡ଼ ଉପରକୁ । ଗାଧୁଆ ବେଳ ହୋଇଆସିଲ । ସୁନା କାହିଁ ? କ କଥା ସେ କହିବ ? କାହିଁକ ବାପୁ କନ୍ଧକୁ ସେ ଅଟକାଇ ରଖିଲ ? ସେ ଆସିଥିଲା ମାଗତାର ମୁଣ୍ଡ ନେବାକୁ । କ୍ଷମା କରପାର ନାହିଁ । ଫେର ଯାଉଛି ହତାଶ ହୋଇ । ଫେରଯିବ, ବହୁତ ଦୂରକୁ—

ଏଇ, ଧାଡ଼ି ଧାଡ଼ି ପାହାଡ଼ମାଳ ସେ ପାଖେ ସେ ଯେଉଁ ଧୂଆଁଳିଆ ଉଚ୍ଚ ପାହାଡ଼, ଲମ୍ବ ପାଚଟା ପରି ନେଳି ଆକାଶରେ ଯାହାର ମଥା ମିଶିଯାଇଛି, ଯାହାର ଗୋଡରେ ପେଟରେ ଚଳନ୍ତି ମେଘର ରୁପେଲି ପରଦା, ସେଇ ନମଗିରି ପାହାଡ଼। ବାପ୍ପାର ଦୃଷ୍ଟି ସେଇଠି। ସେଠି ପଶୁ ମଣିଷର ଭେଦ ନାହିଁ। ବାପ୍ପାର ଆଖି ଚଳନ୍ତି ମେଘ ଉପରେ।

ସୁନା ଆସିଲା। ଅଣ୍ଟାରେ ପତରମାଳ, ଗୋଡରେ ଘନ ସବୁଜ ପତର। ମୁଣ୍ଡରେ ପେନ୍ଥା ପେନ୍ଥା ଫୁଲ। ସୁନା ଆସିଲା ହସିହସିକା। ତେରଚ୍ଛା କଅଁଳ ସୂର୍ଯ୍ୟ କିରଣ ସଜ ପତର ଉପରେ ଚକ୍ ଚକ୍ ଦିଶୁଛି।

ସୁନା ଧରିଲା ବାପ୍ପାର ହାତ।

ବାପ୍ପା ଫେରି ଚାହିଁଲା, ହଁ, ଏଇତ ସେ ସୁନା, ଅଢ଼େଇ ବର୍ଷ ଆଗର ସୁନା। ମାଗତା ନାଇକର ଘରଣୀ ନୁହେଁ।
ବାପ୍ପା !

ସୁନାର ଦୁଇ ଆଖିରୁ ଲୁହଧାର ଗଡ଼ି ଆସୁଛି।

କଣ୍ ରେ ?

ମୁ ଫେରି ଆସିଛି ବାପ୍ପା। କଥାଟେ କହିବ ?

କଣ୍ କଥା ସୁନା ?

ଚାଲ୍ ପଳାଇବା।

ପଳାଇବା ?

ହଁ ସେଇ ଡୋଙ୍ଗର ସେପାରି ନମଗିରି ପାହାଡ଼ ଉପରକୁ। ସେଠି କେହି

ଝୋଲ ଟଙ୍କା ମାଗିବେ ନାହିଁ ବାପ୍ପା—

ସୁନା !

ବାପ୍ପାର ଆଖିରେ ଛଳ ଛଳ ଲୁହ ।

ନାହିଁ କରନା ବାପ୍ପା, ମାଗତାର ପିଲାକୁ ମୁଁ ଲଗାକୁ ଦେଇ ଥାଏି । ଚାଲ—

ଆରେ ସୁନା—

ସୁନା ଦୁଇ ହାତରେ ବାପ୍ପାକୁ କୁଣ୍ଢାଇ ଧଇଲା । ଦୁଇ ଆଖିରୁ ଲୁହଧାର ଗଡ଼ି ପଡ଼ୁଥାଏ । କାନ ପାଖରେ କହିଲା, ଚାଲ ବାପ୍ପା, ନାହିଁ କରନା, ଡେରି ହେଉଛି ।

ବାପ୍ପା ସୁନାର ପିଠି ଆଉଁସିଲା । କହିଲା, ତେବେ, ଚାଲ ।

ବାପ୍ପାର ଛାତି ଉପରୁ ସୁନା ଅଲଗା ହେଲା । ବାପ୍ପା ଧଇଲା ସୁନାର ହାତ ଦୁହେଁ ଚାଲିଲେ ଡୋଙ୍ଗର ଉପରକୁ । କାହାରି ତୁଣ୍ଡରେ ଭାଷା ନାହିଁ । ଦୂରରେ, କେତେ ଦୂରରେ ଡେଉଁଡେଉଁକା କାଛ ପରି ଦିଶୁଛି ନୀଳଗିରି ପାହାଡ଼ମାଳ । ଆକାଶର ବାଦଲ ତଳେ ତାର ଶୃଙ୍ଗ ଛପି ଯାଉଛି ।

ଛତ୍ରପୁର

୭ । ୪ । ୧୯୪୭

